# ଜୀବ ଜଗତର କାହାଣୀ



ଲେଖକ :

ଶ୍ରୀ ଉପେନ୍ଦ୍ରନାଥ ସାହୁ, ବି. ଏ.

# ଜୀବ ଜଗତର କାହାଣୀ

ପ୍ରକାଶିକା :

ଶ୍ରୀମତୀ ସରୋଜନୀ ସାହୁ
ଡ଼ୁରା (ଗଞ୍ଜାମ)

ପ୍ରଥମ ପ୍ରକାଶ :

ମକର ସଂକ୍ରାନ୍ତି, ୧୯୯୪

ମୁଦ୍ରଣ :

ରାମଚଣ୍ଡୀ, ବ୍ରହ୍ମପୁର

ମୂଲ୍ୟ: ବାର ଟଙ୍କା

# ମୁଖବନ୍ଧ

'ଜୀବ ଜଗତର କାହାଣୀ' ମାଧ୍ୟମରେ ମଣିଷର ବିଭିନ୍ନ ସ୍ୱାଭାବିକ ଗୁଣ ଗୁଡ଼ିକର ଚିତ୍ରଣ କରାଯାଇଛି । ନାରୀ ଆଜି-କାଲି 'ପୁନର୍ବିବାହ' କରିବାକୁ ଇଚ୍ଛୁକ କିନ୍ତୁ ସେ ଚାହୁଁଛି ତା'ର ସ୍ୱାମୀ ପତି ତାର ରକ୍ଷା କରୁ । ଏହି ବିଷୟଟି ଆପଣ ପାଇବେ 'ଅମର ପ୍ରେମ' କାହାଣୀରେ ।

'ଧଳୀ'ଟିଏ ନାରୀ ନିଜ ପ୍ରେମିକକୁ ବିପତ୍ତିରୁ ରକ୍ଷା କରିବାକୁ ଚେଷ୍ଟା କରନ୍ତି । 'ବାଘୁଣୀ ସଉତା' ମାଧ୍ୟମରେ ଯୁବ ଜଗତକୁ ଜଣାଇ ଦିଆ ଯାଇଛି ଯେ ସୁନ୍ଦରୀ ରୂପସୀ ନାରୀକୁ ନିଜର କରିବାକୁ ହେଲେ ଧୈର୍ଯ୍ୟ ଏବଂ ତ୍ୟାଗ ଦରକାର ।

'କପୋତର ପ୍ରେମ'ରେ ନାରୀ କିପରି କଷ୍ଟ ସହି ମଧ୍ୟ ନିଜ ପ୍ରେମିକକୁ ଅପେକ୍ଷା କରି ପାରେ ତାର ଚିତ୍ରଣ କରାଯାଇଛି ।

'ଯମ ଦୂତ' କାହାଣୀରେ ପୁରୁଷର ରୁକ୍ଷ ସ୍ୱଭାବର ଚିତ୍ରଣ କରାଯାଇଛି । କିପରି ସେ ସଦାସର୍ବଦା ନିଜର ଶାରୀରିକ ଶକ୍ତି ଉପରେ ବିଶ୍ୱାସ କରି ତାର ବାସନା ପୂର୍ଣ୍ଣ କରିବାକୁ ଚେଷ୍ଟା କରି ଆସିଛି ତାର ଉଦାହରଣ ଏହି 'ଯମ ଦୂତ' ।

'ବିଦେଶ ଯାତ୍ରା' କାହାଣୀ ମାଧ୍ୟମରେ ଆଜିର ନବ ଯୁବକଙ୍କ ପାଇଁ ଏକ ନୂତନ ସନ୍ଦେଶ ଦିଆଯାଇଛି । ବିଦେଶର

ଗୃହକର୍ତ୍ତବ୍ୟ ଦେଖି ଉଚ୍ଚ ଶିକ୍ଷା ପାଇବା ପରେ ଗୃହକଷ୍ଟ ପାଇଁ ବିଦେଶକୁ ଚାଲି ଯାଉଛନ୍ତି । ଜଳ୍ କାହାଣୀର ଶୋଷଣ ମାଛଟି ଯେପରି ଛଟପଟ ହୋଇ ପ୍ରାଣ ବିକଳରେ ସ୍ୱସ୍ଥାନ ପ୍ରତ୍ୟାବର୍ତ୍ତନ କରନ୍ତି ସେପରି ଯୁବକମାନେ ନ ଆସିଲେ ମଧ୍ୟ ଏହି ଭାରତର ସଂସ୍କୃତି, ଶିକ୍ଷା ତାଙ୍କୁ ଦିନେ ନା ଦିନେ ଏହି ରାମ, କୃଷ୍ଣ, ସୀତା, ସାବିତ୍ରୀ, ଗାନ୍ଧି, ନେହେରୁ ଓ ଜୟ ପ୍ରକାଶ ନାରାୟଣଙ୍କର ଦେଶକୁ ଫେରାଇ ଆଣିବ ଏବଂ ସେମାନଙ୍କ ଶକ୍ତି ଓ ସାମର୍ଥ୍ୟରେ ମୋର ଏହି ଭାରତ ଉତ୍ତରୋତ୍ତର ଉନ୍ନତି କରିବ ।

ମୁଁ ଆଶା କରେ, ମୋର ଏହି ରଚନାଟି ପୂର୍ବର ରଚନା ଗୁଡ଼ିକ ଯଥା ଅଶ୍ରୁ, ଉତ୍ତରା, ବେଦବ୍ୟାସ, କବିତା ସାଗର, ତଥା ଉପହାର ଭଳି ପାଠକଙ୍କ ମନୋରଞ୍ଜନ କରିବ ।

— ଲେଖକ

## ଉତ୍ସର୍ଗ

ଏହି ବହିଟି ମୋର ପ୍ରିୟ ମିତ୍ର ଶ୍ରୀ ଅମଳ କୁମାର ତ୍ରିପାଠୀଙ୍କ କରକମଳରେ ଅର୍ପଣ କଲି ।

ଉପେନ୍ଦ୍ର

# ସୂଚୀ ପତ୍ର

# ଅମର ପ୍ରେମ

**ସେ** ଗଛରେ ବାସ କରୁଥିବା ପକ୍ଷୀ ମାନଙ୍କ ମଧ୍ୟରେ ଗୋଟିଏ କଜଳପାତି ରହୁଥାଏ। ସେଦିନ ତାର ପାଳି ପଡ଼ିଲା କାହାଣୀ କହିବା ସକାଶେ। କଜଳପାତି ଆଗରେ ଆସି ନିଜର ଗଳା ପରିଷ୍କାର କରି ନିମ୍ନ ଲିଖିତ ମତେ କାହାଣୀଟି କହିଲା।

ମୁଁ ଅନେକ ଦିନ ହେଲା ଏହି ଗଛରେ ବାସ କରୁଛି। ଏହାର ଚତୁଷ୍ପାର୍ଶ୍ୱରେ ଥିବା ଅନେକ ପୁଷ୍କରିଣୀକୁ ଯାଇ ମାଛ ଶିକାର କରେ। ଦିନକର କଥା। ମୁଁ ଉଡ଼ି ଉଡ଼ି ଯାଉଥାଏ। ଏଠାରୁ ଅଳ୍ପ ଦୂରରେ ନଙ୍ଗଳା ନାଳ ଅଛି। ତାହାର ଦୁଇ ପାଖରେ କିଆ ବାଡ଼। ମୁଁ ଯାଇ ସେଇ କିଆ ଗଛ ଉପରେ ବସି ଅଳ୍ପ ଦୂରକୁ ଅନାଇଲି। ମୁଁ ବସିଥିବା ସ୍ଥାନରୁ ଅଳ୍ପ ଦୂରରେ ବେଙ୍ଗ ବେଙ୍ଗୁଲୀ ଜଳକ୍ରୀଡ଼ା କରୁଥାନ୍ତି। ପାଣିରେ ବୁଡ଼ି ପୁଣି ଫଙ୍କ-ଫଙ୍କ କରି କୂଳକୁ ଡେଇଁ ପଡ଼ୁଥାନ୍ତି। ଏହି ନାଳର ଶଙ୍ଖ ପାଖରେ ଗୋଟାଏ ଧଣ୍ଡା ସାପ ଏ ଦୁହିଁଙ୍କୁ ଦେଖି ନେଲା। ଲୋଭ ଆଖି ପାଖରୁ ସତ୍ରୁ ଚକ ବେଙ୍ଗ ସାପ ପଳାଇ ଯାଇ ଦୂରରେ ରହି ସାପର ଗତିବିଧି ଲକ୍ଷ୍ୟ କରୁଥାନ୍ତି।

ବେଙ୍ଗ ଆଉ ବେଙ୍ଗୁଲୀର ସାପ ପ୍ରତି ଖିଆଲ ନ ଥାଏ। ଉଭୟେ ପ୍ରଣୟ ରସରେ ମଗ୍ନ ଥାନ୍ତି। ପ୍ରେମର ଉନ୍ମାଦନାରେ

ଉଦ୍‌ଦେଶ୍ୟ ସାପକୁ ଦେଖି ମଧ୍ୟ ନ ଦେଖିଲା ଭଳି ରହି ଯାନ୍ତି । ପ୍ରେମ ଏକ ଅଦ୍ଭୁତ ଜିନିଷ । ସେହି ପ୍ରେମରସ ପାନ କରି ସମସ୍ତେ ନିଜକୁ ଭୁଲି ଯାଆନ୍ତି । ମରଣ ଆସି ତାଙ୍କ ନିକଟରେ ଉପସ୍ଥିତ ହେଲଣି ସେହି କଥା ସେମାନେ ଭୁଲି ଗଲେଣି । ବେଙ୍ଗ ବେଙ୍ଗୁଲୀକୁ କହେ, "ହେ ପ୍ରେମିକା ! ମୁଁ ତୁମକୁ ମୋର ଜୀବନଠୁ ବି ଭଲ ପାଏ । ତୁମର ପ୍ରେମ ପାଇବାକୁ ମୁଁ ମୋର ଜୀବନ ମଧ୍ୟ ଦେଇ ପାରେ ।" ତାହାର କଥା ଶୁଣି ବେଙ୍ଗୁଲୀ ହସି ଉଠି କହେ- ଏହା ଅସମ୍ଭବ । ପୃଥିବୀରେ ଅନେକ ଘଟଣା ଘଟି ଯାଇଛି ସେଥିରେ କି ମଣିଷ ଭଳି ପ୍ରାଣୀ ନିଜର ପେଟ ପାଇଁ ପ୍ରିୟତମାଙ୍କୁ ଅନ୍ୟ ପାଖରେ ବନ୍ଧା କରି ଦେଉଛନ୍ତି । ତୁମେ ତ ଗୋଟିଏ ବେଙ୍ଗଟିଏ । ତୁମର ନିକଟରେ ପ୍ରେମ ଭଳି ଏକ ମହାନ୍ ଗୁଣ ପ୍ରକୃତ ଶ୍ରଦ୍ଧା ଅଛି ଏହା କିପରି ବା ମୁଁ ଜାଣି ପାରିବି ? ଏହି ସମୟରେ ସାପଟି ଧୀରେ ଧୀରେ ଆସି ବେଙ୍ଗୁଲୀର ଗୋଡ଼ଟିକୁ ଧରି ନିଏ ।

ବେଙ୍ଗ ସାପକୁ ନେହୁରା ହୋଇ କହେ "ହେ ସାପ ! ତୁମେ ଏହାକୁ ଛାଡ଼ି ଦେଇ ମୋତେ ଭକ୍ଷଣ କର । ସେ ଗର୍ଭବତୀ, ତାର ଗର୍ଭରୁ ଅନେକ ଗୁଡ଼ିଏ ସନ୍ତାନ ଜନ୍ମ ନେବେ । ସେମାନେ ସମସ୍ତେ ତ ତୁମର ଖାଦ୍ୟ ହେବେ । ତୁମେ ଏହି ଶିଶୁ ମାନଙ୍କୁ ଖାଇ ଅନେକ ଦିନ ବଞ୍ଚିବ । ସାପ ବେଙ୍ଗର ନେହୁରା ମାନି ନିଏ । ସେ ତତ୍‌କ୍ଷଣାତ୍ ବେଙ୍ଗୁଲୀକୁ ଛାଡ଼ି ଦେଇ ବେଙ୍ଗକୁ ଖାଇ ପକାଏ । ମୁଁ ସେତେବେଳେ ଯାଏ ବେଙ୍ଗୁଲୀକୁ ଦେଖେ । ସେ ସେଠାରୁ ଅନେକ ଦୂରରେ ରହି ସେ ଢଳ ଢଳ ହୋଇ ଆଖିରୁ ଲୁହ ଝରାଏ ।

ଯେତେ ମୁଁ ତାକୁ ଏହି ଦେଉଳ ପୋଖରୀ ତଳେ ଥିବା ମାଳୀବନ୍ଧରେ ବୈଠୁଥିବାର ଦେଖିଲି । ତାର ନୂର ପଟରେ ଅନେକ ଗୁଡ଼ିଏ ଛୁଆ । ତାର ଆଖିରେ ଲୁହ । ମୁଁ ତାକୁ ପଚାରିଲି "ବେଙ୍ଗୁଲୀ ! ତୁମେ କଣ ଏ ପର୍ଯ୍ୟନ୍ତ ବେଙ୍ଗକୁ ପାସୋରି ନାହିଁ ? ସେ କାନ୍ଦି କାନ୍ଦି ଉତ୍ତର ଦିଏ ପ୍ରେମିକାକୁ ରକ୍ଷା କରିବାକୁ ଯାଇ ଯେଉଁ ପ୍ରେମିକ ଜୀବନ ଦେଇ ଦିଏ ତାକୁ କଣ କିଏ ପାସୋରି ପକାଇବ ?

ଏପରି ଅନେକ ଦିନ ପରେ ବର୍ଷା ଋତୁ ଆସିଲା । ବେଙ୍ଗୁଲୀକୁ ଦେଖି ଏକ ଯୁବକ ବେଙ୍ଗ ତାକୁ ପ୍ରଣୟର ସଙ୍କେତ ଦେଲା କେତେ କାକୁତି ମିନତି କଲା । ବେଙ୍ଗୁଲୀ ତାର ନିକଟକୁ ଯାଇ କହିଲା "ମୋର ପାଇଁ ମୋର ସ୍ୱାମୀ ପ୍ରାଣ ତ୍ୟାଗ କଲେ । ତୁମର ଯଦି ସେପରି ଗୁଣ ଅଛି ତେବେ ମୁଁ ତୁମର ଭାର୍ଯ୍ୟା ହେବାକୁ ମଞ୍ଜୁର । ଯୁବକଟି ଧୀରେ ଧୀରେ ମଥା ନତ କରି ଚାଲିଗଲା । ଆଜି ପର୍ଯ୍ୟନ୍ତ ବେଙ୍ଗୁଲୀ ତାର ସ୍ୱାମୀଙ୍କୁ ମନେ ପକାଇ ଏକୋଶ ରହୁଛି ।

କାହାଣୀଟି କହିସାରି କନକଦାନ୍ତ ସମସ୍ତଙ୍କୁ ଜଣାଇଲେ । ସେ ଦେଖିଲେ ସବୁ ପକ୍ଷୀଙ୍କର ଆଖିରେ ଆଖିଏ ଲୁହ ।

* X *

# ଏକ ବର୍ଷ ପରେ

ରାତି ଗମ୍ଭୀର ହେବାରୁ ପକ୍ଷୀ ମାନେ ଆସି ସେହି ବରଗଛ ଡାଳରେ ଜମା ହେବାକୁ ଲାଗିଲେ । କିଛି ସମୟ ପରେ ପକ୍ଷୀଙ୍କ ଫଡ଼ ଫଡ ଶବ୍ଦ ବନ୍ଦ ହେଲା । ଏକ ପ୍ରକାର ଅସାଧାରଣ ନୀରବତା ଖେଳିଗଲା ଏହି ଦେଉଳ ବଢର ହୁଡ଼ାରେ । ପାଖରେ ଥିବା ଶ୍ମଶାନରେ ମଧ୍ୟ ନୀରବତା । ଆଜିର ଏହି ପକ୍ଷୀମାନଙ୍କ ସଭାରେ ବଗୁଲୀ ତାର କାହାଣୀ ଶୁଣାଇବାକୁ ଯାଇ କହିଲା "ମୁଁ ଅନେକ ଦିନ ତଳେ ଚିଲିକା କୂଳରେ ବାସ କରୁଥିଲି । ସେହି ଚିଲିକାକୁ ଅନେକ ଦର୍ଶକ ପ୍ରକୃତିର ଶୋଭା ନିରୀକ୍ଷଣ କରିବାକୁ ଆସୁଥାନ୍ତି । ପ୍ରକୃତିର ଏହି ଅଞ୍ଚଳ ପ୍ରକୃତିର ମନୋରମ ଦୃଶ୍ୟରେ ଭରି ରହିଥାଏ ।

ଅନେକ ଧୀବର ମାଛ ଧରିବାକୁ ଛୋଟ ଛୋଟ ନୌକାରେ ଚିଲିକା ବକ୍ଷରେ ଘୂରି ବୁଲୁଥାନ୍ତି । ପକ୍ଷୀମାନେ ଆକାଶରେ ଚକ୍ରାକାରରେ ବୁଲି ମାଛଟିଏ ଧରି ପୁଣି ଉପରକୁ ଉଡ଼ି ବୁଲନ୍ତି । ଏପରି ଏକ ମନୋରମ ପରିବେଶରେ ଏକ ଦମ୍ପତି ନୌକା ବିହାର କରିବା ସକାଶେ ଏହି ଚିଲିକା ବକ୍ଷରେ ଘୂରୁ ବୁଲୁଥାନ୍ତି । ଏହି ଚିଲିକାର ମନୋରମ ପରିବେଶ ଉଭୟଙ୍କୁ ଆନନ୍ଦ ସାଗରରେ ବୁଡାଇ ଦେଉଥାଏ ।

ଅସ୍ତଗାମୀ ସୂର୍ଯ୍ୟଙ୍କ କନକ କିରଣ ଚିଲିକା ବକ୍ଷରେ ପଡ଼ି ଏକ ସୁନ୍ଦର ଦୃଶ୍ୟ ପରିବେଷଣ କରୁଥାଏ । ଏହି ସମୟରେ ଆକାଶରେ ଏକ କଳାହାଣ୍ଡିଆ ମେଘ ଦେଖାଯାଏ । ମେଘଟି ଆସ୍ତେ ଆସ୍ତେ ଚିଲିକା ବକ୍ଷରେ ଅସରାଏ ବରଷିଯାଏ । ଏହି ଦମ୍ପତି ମେଘ ଆଉ ପବନର ଆଘାତରେ ଅସ୍ତବ୍ୟସ୍ତ ହୋଇ ପଡ଼ନ୍ତି । ଯେକୌଣସି ମତେ ନାଉରିଆ ନୌକା ନେଇ ତଟରେ ହଗା ପର୍ବତ ନିକଟରେ ପହଞ୍ଚାଇ ଦିଏ । ପୁରୁଷ ଏବଂ ସ୍ତ୍ରୀ ଏକ ବଡ଼ ପଥର ଉହାଡ଼ରେ ରହି ବର୍ଷାର ପ୍ରକୋପରୁ ନିଜକୁ ରକ୍ଷା କରିବାକୁ ଚେଷ୍ଟା କରନ୍ତି ।

ରାତି ଯେ କୌଣସି ମତେ କଟିଯାଏ । ସକାଳର କଅଁ-କଅଁ ସୁନେଲି କିରଣ ସେହି ଦମ୍ପତି ମନରେ ଏକ ନୂଆଁ ଆଶାର ସଞ୍ଚାର କରିଥାଏ । ସେମାନେ ନୌକାରେ ବସି ଗୃହକୁ ଫେରିବାର ଆଶା ନେଇ ବସନ୍ତି ନୌକାରେ । ମଧୁମୟ ସକାଳ ତାଙ୍କ ମନରେ ସେତେ ଆନନ୍ଦ ଦେଉ ନ ଥାଏ । ଭିଜା ଭିଜା ଲୁଗାପଟା ତାଙ୍କୁ ଅବୋଧ ଲାଗୁଥାଏ । ପୁରୁଷଟିକୁ ଟିକିଏ ଜ୍ୱର ମଧ୍ୟ ହୋଇ ଯାଇଥାଏ । ସ୍ତ୍ରୀ ତାଙ୍କର ସ୍ୱାମୀଙ୍କୁ କୋଳରେ ଧରି ନିଜର ହାତରେ ତାଙ୍କର ହାତକୁ ଘଷି ଗରମ କରାଇବାକୁ ଚେଷ୍ଟା କରୁଥାଏ ।

ମୁଁ ସେମାନଙ୍କ ଉପରେ ଉଡ଼ି ବୁଲୁଥାଏ । ସେମାନଙ୍କର ପ୍ରେମ ଆଉ ସ୍ନେହ ଦେଖି ମନ୍ତ୍ରମୁଗ୍ଧ ଭଳି ଅନାଇ ରହିଥାଏ । ଧୀରେ ଧୀରେ ସେହି ଦୁଇ ପରିବାର ଅସି ବାଲୁକାରେ ପହଞ୍ଚୁଥାନ୍ତି

ସ୍ୱାମୀଙ୍କୁ ଅତ୍ୟଧିକ ଜ୍ୱର ହେତୁ ତାଙ୍କ ହାସପାତାଳରେ ଭର୍ତ୍ତି ହେବାକୁ ପଡେ । ଡାକ୍ତର ରୋଗୀର ଅବସ୍ଥା ଦେଖି କହନ୍ତି "ଏହାଙ୍କୁ ନିମୋନିଆ ହୋଇ ଯାଇଛି । କଷ୍ଟକର ହେଇ ଗଲା । ସ୍ତ୍ରୀଟି ତାର ସମସ୍ତ ଗହଣା ବନ୍ଧକ କରି ତାଙ୍କୁ କଷ୍ଟକ ଧରି ଗଲେ । ମୋର ମନରେ ମଣିଷର ମଣିଷ ପ୍ରତି ଏପରି ସ୍ନେହ ଦେଖି ଆଶ୍ଚର୍ଯ୍ୟ ହୋଇ ରହିବ ନ ପାରେ ।

ଶେଷରେ ରୋଗୀର ଦେହରେ ରକ୍ତର ଅଭାବ ଦେଖାଯାଏ, ହାସପାତାଳରେ ରକ୍ତ ନ ଥାଏ । ସ୍ତ୍ରୀଟି ନିଜର ରକ୍ତ ମଧ୍ୟ ଦେଇଦିଏ ରୋଗୀଟି ପାଇଁ । କେତେ ଚେଷ୍ଟା କରି ମଧ୍ୟ ସେ ନିଜର ସ୍ୱାମୀଙ୍କୁ ବଞ୍ଚାଇ ପାରେନା । ମନ ଦୁଃଖରେ ଶେଷରେ ନିଜ ଘରେ ଫେରନ୍ତି । ଆଜି ମଧ୍ୟ ସେ ସେହିପରି ସେହି ଘରେ ରହୁଛନ୍ତି । ବିବାହର ଦଶଟା ଦିନର ସ୍ମୃତି ନେଇ ସେ ଅନେକ ଦିନ ହେଲା ବଞ୍ଚିଛନ୍ତି । ଏବର ସମାଜ ତ ବିଧବା ବିବାହ ପାଇଁ ପ୍ରତିରୋଧ କରୁନାହିଁ ସେ ରୂପବତୀ ଆଉ ଗୁଣବତୀ ହୋଇଥିବାରୁ ତାଙ୍କୁ ବିବାହ କରିବାକୁ ଅନେକ ପ୍ରସ୍ତାବ ଆସୁଛି କିନ୍ତୁ ସେ ମନା କରି ଦେଉଛନ୍ତି । ଅନେକ ଦିନ ଧରି ମଣିଷକୁ ବଞ୍ଚିବାକୁ ପଡ଼ିବ । କପରି ବା ଏହି ନାରୀଟି ସ୍ୱାମୀର ସ୍ମୃତିକୁ ଛାତିରେ ଧରି ବଞ୍ଚି ରହିବ ।

କାଲି ଥିଲା ସେହି ପୁରୁଷଟିର ମୃତ୍ୟୁ ଦିବସ । ମୋର ମନ କଣ ହେଲା ନା ଜାଣିନି ମୁଁ ଚିଲିକା କୂଳକୁ ବୁଲିଗଲି । ଦେଖିଲି ସେହି ବିଧବା ନାରୀଟି ଚିଲିକା କୂଳରେ ବସି ଅନିମେଷ ନୟନରେ

ଅନାଇ ରହିଛନ୍ତି ଚିଲିକାର ନୀଳ ବକ୍ଷକୁ । ଅନେକ ସମୟ ରହିଲା ପରେ ମୁଁ ଦେଖେ ସେହି ନାଗଟି ଆଉ ସେଠାରୁ ଉଠିବାକୁ ଚେଷ୍ଟା କରୁ ନାହିଁ । ତାର ନିକଟରେ ବସି ତାଙ୍କୁ ଦେଖେ । କିଛି ସମୟ ଦେଖିବା ପରେ ମୁଁ ଜାଣି ପାରେ ଯେ ସେ ମରିଯାଇଛି । ଚିଲିକାର ନୀଳ ବକ୍ଷକୁ ଅନାଇ ଅନାଇ ତାର ପ୍ରାଣବାୟୁ ଚାଲିଯାଇଛି ଠିକ୍ ସ୍ୱାମୀଙ୍କ ମୃତ୍ୟୁର ଏକ ବର୍ଷ ପରେ ।



# କପୋତୀର ପ୍ରେମ

ପକ୍ଷୀମାନେ ବୃକ୍ଷ ଶାଖାରେ ବସିଥାନ୍ତି । ଅନେକ ସମୟ ଭୁଣଭାଣ ବସିବା ପରେ କାଉ କହେ ଆଜି ଆମର ସେନାପତି ତଲ ଏତେବେଳ ଯାଏ ଆସି ନାହାନ୍ତି । କଥା କହିବାର ପାଳି ତ ତାହାଙ୍କର । କିଛି ସମୟ ବସିବା ପରେ ଈଗଲ ଆକାଶରୁ ଓହ୍ଲାଏ । ତାଙ୍କର ନାମ ଶକ୍ତି । ତାଙ୍କ ସାଙ୍ଗରେ ତାଙ୍କର ତିନି ଭାଇ ଅଛନ୍ତି । ସେମାନେ ଏହି ପୋଖରୀ ହୁଡାରେ ବସବାସ କରୁଥିବା ସମସ୍ତ ପକ୍ଷୀଙ୍କୁ ଅନ୍ୟ ଦଳ ଆଉ ଶତ୍ରୁମାନଙ୍କ ହାତରୁ ରକ୍ଷା କରନ୍ତି । ଦରକାର ପଡ଼ିଲେ ଶବ୍ଦେ କଳକଣ୍ଠରେ ଏକ ବିରାଟ ସୈନ୍ୟ-ବାହିନୀ ଏମାନଙ୍କୁ ସାହାଯ୍ୟ କରିବାକୁ ବାହାରି ପଡ଼ନ୍ତି ।

ସେଦିନ ମୁଁ ମୋର ଭାଇ ମାନଙ୍କୁ ଧରି ଆକାଶରେ ଉଡ଼ିବାକୁ ଲାଗିଥିଲି । ପ୍ରତ୍ୟେକ ଭାଇଙ୍କ ଅଧୀନରେ ଚାଳିଶି ପଚାଶି କପୋତ ପାଆନ୍ତି । ସମସ୍ତ ଅଞ୍ଚଳକୁ କଠୋର ରକ୍ଷା କରିବା ସେ ବିଷୟରେ ଆମେ ଏକ ଅଭ୍ୟାସ କରିବାରେ ଲାଗି ପଡ଼ିଥାଉ ।

ଏପରି ଏକ ସମୟରେ ଏକ ଅଦ୍‌ଭୂତ ଘଟଣା ଦେଖି ଆମେ ସମସ୍ତେ ନିକଟସ୍ଥ ବୃକ୍ଷରେ ବସିପଡ଼ିଲୁ । ଏଠାରୁ ଅଳ୍ପ ଦୂରରେ ଏକ ବିରାଟ ପୋଖରୀ ଅଛି । ଏହାକୁ ବଉଳା କଣ୍ଡ କୁହାଯାଏ । ଏହାର ଆଖ ପାଖରେ ଅନେକ ବୃକ୍ଷ ଅଛି । ସେ ଗୁଡ଼ିକ ମଧ୍ୟରେ ସାହାଡ଼ା ଆଉ ଶିମିଳି ପ୍ରଧାନ । ଏହି ଶିମିଳି ଗଛ ଗୁଡ଼ିକ ବଡ଼ ଆକାରର । ଏହି ପୋଖରୀର ଅଳ୍ପ ଦୂରରେ ବାଘୁଆ ବରଗଛ ପଟାର ଏଠାରେ ବିରାଟ ଆକାରର ତିନି ଗୋଟି ଶିମିଳି ଗଛ ଅଛନ୍ତି । ସେଥିରୁ ଗୋଟିକରେ ଗୋଟାଏ କପୋତ ବାସ କରେ, ଅନ୍ୟଟିରେ ବାସ କରେ ଗୋଟିଏ କପୋତୀ । ଦୁହେଁ ପ୍ରତିଦିନ ଉଡ଼ି ବୁଲନ୍ତି ଏହି ଅଞ୍ଚଳରେ । ପରସ୍ପରକୁ ଦେଖନ୍ତି ସେମାନଙ୍କ ନିଜ ନିଜ ବୃକ୍ଷରେ ବସି । ଦୁଇ ଜଣ ଯୁବକ ଯୁବତୀ । ଧଳା ଫର ଫର ନରମରେ ଆଚ୍ଛାଦିତ ହୋଇ କପୋତୀ ଅତ୍ୟନ୍ତ ସୁନ୍ଦର ଦେଖା ଯାଉଥାଏ । ତାର ସୁନ୍ଦରତା ତଥା ହୃଷ୍ଟପୁଷ୍ଟ ଚେହେରା ଦେଖି କପୋତ ତାର ଆଡ଼କୁ ଆକର୍ଷିତ ହୋଇ ଉଠେ ।

ତଳେ ବଉଳା କଣ୍ଡର କଳ କଳ ନାଦ କରି ବହି ଚାଲିଛି ଗଛ ଡାଳରେ । କଆଁବଣରେ ଫୁଟିଥିବା କଆଁ ଫୁଲରେ

ମନଭୁଲଣିଆ ସୁଗନ୍ଧରେ ବିମୋହିତ ହୋଇ ଉଠନ୍ତି କପୋତ କପୋତୀ ଭଉଁରେ । ଦୁହେଁ ଦୁହିଁଙ୍କୁ ଅନାନ୍ତି । ଚକ୍ଷୁ ଚକ୍ଷୁର ମିଳନ ହୁଏ । ଏହି ମିଳନରେ କପୋତୀ ମଥା ନତ କରେ । ଗାଇ ଉଠେ ଗୁଣଗୁଣ ମଧୁର ଗୀତ । ସେହି ଗୀତର ଅର୍ଥ ହେଲା ଏହି ସୁନ୍ଦର ଶାଗୁଆ ଅଞ୍ଚଳ ମନୋହର ଦୃଶ୍ୟ ମୋର ମନରେ ଏକ ନୂତନ ଭାବନାର ସୃଷ୍ଟି କରୁଛି । ମୋର ମନରେ ଏକ ପ୍ରକାର ନୂତନ ଅଜଣା ଭାବନା ଖେଳି ଉଠୁଛି । ଯେପରିକି ମୋର ହୃଦୟ କାହାର ଆଗମନର ପଥ ଅନାଇ ରହିଛି । ସେ ସୁନ୍ଦର ସରସ ପକ୍ଷୀଟିଏ କିଏ, ତାକୁ ଦେଖିବାକୁ ମୁଁ ମନ ସାଥ ହୋଇ ବୃକ୍ଷର ଡାଳରେ ବସି ରହୁଛି ।

କପୋତୀର କଥାରେ କପୋତର ମନରେ ସାହସ ସଞ୍ଚାର ହୁଏ । ସେ ଧୀରେ ଧୀରେ ଉଡ଼ିଯାଇ କପୋତୀ ଠାରୁ ଅଳ୍ପ ଦୂରରେ ବସି କହେ "ମୋର ବୟସ ବର୍ତ୍ତମାନ ହୋଇଯାଉଛି । ମୋର ମା କହୁଛି- ରେ କପୋତ ପୁଅ ! ତୁ ବର୍ତ୍ତମାନ ବାଲ୍ୟ କାଳ ଅତିକ୍ରମ କରି ଯୌବନର ପ୍ରଥମ ପାହାଚରେ ପ୍ରବେଶ କରିଛୁ । ତୋର ପର ଆକାଶରେ ଉଡ଼ିବାକୁ ସକ୍ଷମ ହୋଇ ପାରିଛି । ବର୍ତ୍ତମାନ ତୁ ତୋର ସକାଶେ ଉପଯୁକ୍ତ କନ୍ୟା ଖୋଜି ବିବାହ କରି ଘର କର । ତୋର ଅନେକ କୁଡ଼ିଏ ସନ୍ତାନ ହୁଅନ୍ତୁ । ଏହି ଅଞ୍ଚଳ ସେମାନଙ୍କ ଦ୍ୱାରରେ ଶ୍ରେଷ୍ଠ ଶ୍ରେଷ୍ଠ ଶାବକଙ୍କ ଶ୍ରେଣୀ ଉଡ଼ାରେ ଭରି ଉଠୁ । ଏହା କହି ସେ ଏହି ପୋଖରୀ ଧାର ପାଖରେ ଥିବା ଗଛକୁ ଚାଲିଗଲେ । ବର୍ତ୍ତମାନ ସେ କୁଣ୍ଡାପଥର ଟିମିରିରେ ଥିବା ବରଗଛରେ ରହୁଛନ୍ତି ।" ଏହା କହି ସେ କପୋତର

ନିକଟକୁ ଧୀରେ ଧୀରେ ଆସେ । କପୋତ୍ତୀ ସେହି ପ୍ରିୟ କପୋତର ନିକଟରେ ବସି ନିଜକୁ ଭାଗ୍ୟବନ୍ତ ମନେ କରେ ।

କପୋତ୍ତୀ କହେ "ମୁଁ ଅନେକ ଦିନରୁ ତୁମ ଭଳି ଯୁବକ ସୁନ୍ଦର ଏବଂ ସାହସୀ ଜୀବନ ସାଥୀକୁ ପାଇବାର ଆଶା ନେଇ ଏଠାରେ ବସି ରହିଥିଲି । ମୋ ଭାଗ୍ୟକୁ ତୁମେ ଏଠାରେ ମିଳିଗଲ । ବର୍ତ୍ତମାନ ମୋତେ ପତ୍ନୀ ରୂପେ ଗ୍ରହଣ କରି ଦାମ୍ପତ୍ୟ ଜୀବନର ସୁଖ ପ୍ରଦାନ କର । ଜୀବନରେ ପ୍ରତ୍ୟେକ ପ୍ରକାର ସୁଖ ଛଡା ଅନ୍ୟ କୌଣସିରେ କାର୍ଯ୍ୟ ନାହିଁ । ଏହା ଦ୍ଵାରା ଆମର ସନ୍ତାନ ଜନ୍ମ ଗ୍ରହଣ କରିବେ । କପୋତରୂପୀ ପ୍ରାଣୀ ଏ ସଂସାରରେ ବଞ୍ଚି ରହିବେ । ଆମରି ଭଳି କୋମଳ ସୁକୁମାର ଜୀବ ଏହି ପୃଥିବୀରେ ବଞ୍ଚିବା କଷ୍ଟକର ! ଦୁହେଁ ପରସ୍ପରର ପ୍ରେମରେ ଆବଦ୍ଧ ହୋଇ ଆନନ୍ଦରେ ବଞ୍ଚିବାକୁ ଲାଗିଲୁ ।

ମୁଁ ଏହିପରି ଦୁଇଟି ସୁକୁମାର ଜୀବଙ୍କୁ ପାଇ ଆନନ୍ଦରେ ନାଚି ଉଠେ । ଏମାନଙ୍କ ମାଂସ ଦିନେ ନା ଦିନେ ଆମରି ଖାଦ୍ୟ ହେବ, ସନ୍ଦେହ ନାହିଁ । କିନ୍ତୁ ଏମାନଙ୍କ ସନ୍ତାନ ସନ୍ତତି ହେବା ପର୍ଯ୍ୟନ୍ତ ଏହାକୁ ବଞ୍ଚିବାକୁ ଦିଆଯିବା ଉଚିତ ନଚେତ୍ ଆମରି ଅଞ୍ଚଳର ଖାଦ୍ୟ ଏକାବେଳକେ ସରିଯିବ । ଏହା ଭାବି ଏହି ଦୁଇ ଜଣଙ୍କୁ ହତ୍ୟା ନ କରିବାକୁ ମୁଁ ଆଦେଶ ଦିଏ ।

ମୁଁ ଦିନେ ଶୁଇଙ୍କୁ ଡାକି କହେ ଏହି ଦୁଇଜଣଙ୍କ ମେଳାପ ଦେଖି ମନେ ହେଉଛି ଏମାନେ ପରସ୍ପରକୁ ଭଲ ପାଆନ୍ତି । ତୁମେ

କପୋତ ଖାଦ୍ୟ ଖୋଜୁଥିବା ସମୟରେ ଜାବତ ଧରି ଆଣି ଦୂରରେ ଥିବା ବୃକ୍ଷରେ ବନ୍ଦୀ କରେ । କପୋତୀ କଣ କରୁଛି ଦେଖିବା । ମୋର ଆଦେଶ ପାଳନ ହୁଏ । କପୋତ ନ ଆସିବାରୁ କପୋତୀ ଆତୁର ହୋଇ ଉଠେ । ସେ ଚକର କାଟି ଘୂରି ଆର୍ତ୍ତ ନାଦ କରି ଉଠେ । କିଛି ସମୟ ପରେ ମନ ମାରି ବସେ ଯେଉଁଠି କି ଉଭୟେ ବସିଥାନ୍ତି । ମୁଁ ସେହି ଗଛର ପାଖରେ ଥିବା ଅନ୍ୟ ଗଛରେ ରହି କପୋତୀର କରୁଣ କ୍ରନ୍ଦନ ଶୁଣୁଥାଏ ।

କପୋତୀ ତାର ପରଦିନ ଆଉ ଖାଦ୍ୟ ଅନ୍ୱେଷଣରେ ଗଲା ନାହିଁ । ସେ ସେହି ବୃକ୍ଷର ଶାଖାରେ ବସି ରହିଥାଏ । ଘଡ଼ିଏ ପହରକେ ଉଡି ଗୋଟାଏ ଚକର ମାରି ଆସି ପୁଣି ଗଛରେ ବସି ପଡେ । ଏପରି ସେ ନ ଖାଇ ନ ପିଇ ପାଞ୍ଚଦିନ ପର୍ଯ୍ୟନ୍ତ ସେହି ଗଛ ଉପରେ ବସି ରହେ । ତାର ଅବସ୍ଥା ଦେଖି ମୋ ମନରେ ଦୁଃଖ ହୁଏ । ମୁଁ ତାର ନିକଟକୁ ଯାଏ । ମୋତେ ଦେଖି ସେ କହେ " ହେ ଶକ୍ତିଶାଳୀ ପକ୍ଷୀରାଜ, ମୋତେ ଭକ୍ଷଣ କରନ୍ତୁ । ମୋ ପ୍ରିୟ ସ୍ୱାମୀ ମୋତେ ଛାଡି କେଉଁଆଡେ ଚାଲିଯାଇଛନ୍ତି । ତାଙ୍କର ଖୋଜ ଖବର ମୁଁ ପାଉ ନାହିଁ । ଏହା ଶୁଣି ମୁଁ କହେ- ମୁଁ ଦେଉଳବନ୍ଧ ହୁଡ଼ାରେ ରହୁଛି । ତୋର ସ୍ୱାମୀଙ୍କୁ ପାଇଲେ କଣ ମୋ ନିକଟକୁ ଆସି ତୋର ଶରୀର ଭକ୍ଷଣ କରିବାକୁ ଅନୁମତି ଦେବୁ । ସେ କାନ୍ଦି କାନ୍ଦି କହେ " ହେ ପକ୍ଷୀରାଜ, ମୁଁ ଶପଥ କରି କହୁଛି" ମୋର ସ୍ୱାମୀଙ୍କୁ ପାଇଲେ ଆପଣ ମୋତେ ଭକ୍ଷଣ କରି ପାରନ୍ତି । ମୁଁ ତାର ସ୍ୱାମୀକୁ ବନ୍ଦୀରୁ ମୁକ୍ତ କରିଦିଏ ଉଭୟେ ଉଭୟଙ୍କୁ ଦେଖି ଆନନ୍ଦିତ ହୁଅନ୍ତି ।

ଏପରି ଦୁଇଦିନ ବିତିଯାଏ । ହଠାତ୍ କପୋତୀ ଆସିବାର ଦେଖି ମୁଁ ଗମ୍ଭୀର ହୋଇଯାଏ । ଦୁହେଁ ଆସି ମୋର ପାଦ ତଳେ ପଡ଼ି ଉଭୟଙ୍କୁ ଭକ୍ଷଣ କରିବାକୁ କହନ୍ତି । ମୁଁ ଏହାର କାରଣ ପୁଚ୍ଛା କରେ । କପୋତ କହେ " ଆମ୍ଭ ଦୁହିଁଙ୍କର ମିଳନରେ ହିଁ ଏହି ଜୀବନ ସୁନ୍ଦର ଆଉ ମଧୁର ହୋଇ ଉଠୁଛି । ଅଳ୍ପ କେତେ ଦିନର ବିରହ ଯନ୍ତ୍ରଣା ମୋତେ ଯେତେ କଷ୍ଟ ଦେଉଛି ସେଥିରୁ ମୁଁ ଅନୁମାନ କରି ନେଉଛି ଯେ ଏପରି ବିରହ ଯନ୍ତ୍ରଣାରେ ବଞ୍ଚିବା ଅପେକ୍ଷା ମୃତ୍ୟୁ ହିଁ ଶ୍ରେୟସ୍କର । ତେଣୁ ମୋତେ ଭକ୍ଷଣ କରନ୍ତୁ କପୋତୀ କହେ ସ୍ୱାମୀ ବିନା ସ୍ତ୍ରୀର ଜୀବନରେ ମୂଲ୍ୟ ବା କଣ ? ରାତି ଦିନ ଅପଲକ ନୟନରେ ପ୍ରିୟର ପଥ ଚାହିଁ ରହିବା ପରିବର୍ତ୍ତେ ମୃତ୍ୟୁ ହିଁ ଶ୍ରେୟସ୍କର । ତେଣୁ ମୋତେ ହିଁ ଭକ୍ଷଣ କରନ୍ତୁ । କିମ୍ବା ଆମ୍ଭ ଦୁହିଁଙ୍କୁ ଭକ୍ଷଣ କରନ୍ତୁ । ଏହା ଶୁଣି ଏହି ଦୁହିଁଙ୍କୁ ମୁଁ କହେ "ତୁମ୍ଭ ଦୁହିଁଙ୍କୁ ମୁଁ ମୁକ୍ତ ଦେଉଛି । ତୁମ୍ଭେ ଏହି ପୋଖରୀର ଅପର ପାର୍ଶ୍ୱରେ ଥିବା ଜାମୁକୋଳି ବୃକ୍ଷରେ ରୁହ । ଆସ, ସମସ୍ତେ ଦେଖିବା ସେମାନେ କଣ କରୁଛନ୍ତି ।

ସମସ୍ତ ପକ୍ଷୀ ଯାଇ ଦେଖନ୍ତି କପୋତକୁ ଆଉଜି କପୋତୀ ନିଦ୍ରା ଯାଉଛନ୍ତି, ଆଉ କପୋତ ତାଙ୍କୁ ଜଗି ରହିଛି । ସେମାନଙ୍କ ପ୍ରେମ ଦେଖି ସମସ୍ତ ପକ୍ଷୀ ତାଙ୍କୁ ଆଶୀର୍ବାଦ ଦେଇ କହନ୍ତି "ତୁମର ପ୍ରେମ ଅମର ରହୁ ।"

— x —

# ଧଳୀ

ଗାଁ ର ଗହଳଚହଳ ବଢ଼ି ଯାଇଥାଏ । ଦେଉଳବନ୍ଧର ମୁଣ୍ଡାରେ ଥିବା ବରଗଛରେ ସମସ୍ତ ପକ୍ଷୀ ଆସି ରୁଣ୍ଡ ହେବାରେ ଲାଗିଛନ୍ତି । ସେହି ଦିନର ସନ୍ଧ୍ୟାରେ ହାଉ ତାର କାହାଣୀ କହିବାକୁ ଯାଇ କହେ "ଧଳା ଫର ଫର ଛେଳିଟିଏ । ଦେଖିବାକୁ ଉଜଳ ଡାଉଳ । ତାର ମାଂସଳ ଦେହ ସହ ଯୌବନର ଆଗମନର ଶୋଭା ଦେଖି କଳାମଚମଚ ଷଣ୍ଢଟି ତାର ପାଖ ଦେଇ ଗଲାବେଳେ କହେ "ହେ ସୁନ୍ଦରୀ ! ମୁଁ ତୋତେ ଭଲ ପାଏ । ତୁ ଯଦି କହିବୁ ମୁଁ ଛାଡ଼ା କରିବି । ତୁ ଯଦି ଭଲ ପାଉ ସେ ଧୂସର ରଙ୍ଗର ଷଣ୍ଢଟା ପାଖ ଦେଇ ଯିବୁନି । ସେ ବଡ଼ ଧୂର୍ତ୍ତ, ଯେଉଁଠି ସୁନ୍ଦରୀଟିଏ ମିଳେ ସେ ବିବାହ କରି ପୁଣି କିଛି ଦିନ ପରେ ତାକୁ ଛାଡ଼ି ଦିଏ ।"

ଚତୁରୀ ଛେଳି କହେ "ମୁଁ ତୋତେ ଭଲ ପାଏ । କିନ୍ତୁ ମୋର ଗୋଟାଏ ସର୍ତ୍ତ । ଏହି ଗାଁର ଗୋଠରେ କୌଣସି ଗାଈ ସହ ତୋର କିଛି ସମ୍ପର୍କ ରହିବ ନାହିଁ । ଆମେ ଦୁହେଁ ହିଁ ଘୂରି ବୁଲିବା ।" ଷଣ୍ଢ ତାର କଥାରେ ସମ୍ମତି ପ୍ରଦାନ କରେ ।

ସେହି ଦିନୁ ଏହି ସୁନ୍ଦରୀ ଧଳୀ ସହ କଳା ମିଚ ମିଚ ଷଣ୍ଢଟି ଘୂରି ବୁଲେ । ସେମାନେ ଅନେକ ଜାଗା ବୁଲନ୍ତି । ଦିନେ ସେମାନେ ହସ ଖୁସିରେ ବୁଲି ବୁଲି ଧାଇଁ ଧାଇଁ ଯାଇ ପହଞ୍ଚନ୍ତି ପଥର ସେପାରି । ସେହିଠାରେ ଗୋଟିଏ ଶ୍ରେଷ୍ଠ ନଈ ବହି

ଶୁଳିଛନ୍ତି । ଦୁଇ ପଟରେ ହୁଡା । ନଈକୁ ଲଗି କଛୁ କଛୁ ପଡ଼ିଆ ଜାଗା ଅଛି । ସେଠି ଠାରେ ସବୁଜ ଘାସ କଅଁଳ ଅତ୍ୟନ୍ତ ସୁନ୍ଦର ଦେଖା ଯାଉଥାଏ । ଛଡ଼ା ଏହି ସବୁଜ ଓ ଉଜ କଅଁଳ ଘାସ ଦେଖି ସେହି ଆଡ଼କୁ ଆକୃଷ୍ଟ ହୋଇଯାଏ ।

ବସନ୍ତର ଚନ୍ଦନ ଗନ୍ଧ ଯୁକ୍ତ ସମୀର ଦୁଇ ପ୍ରେମିକଙ୍କର ମନରେ ପ୍ରେମ ସଞ୍ଚାର କରି ଦେଇଥାଏ । ଦୁହେଁ ମନ ଫୁର୍ତ୍ତିରେ ଘାସ ଚରିବାକୁ ଲାଗିଥାନ୍ତି । ଦୁଇ ପଟରେ ଥିବା ସଦ୍ୟ ରୋପିତ ଗ୍ରେଷ୍ଠ ଶ୍ରେଷ୍ଠ ବଣୁଆ ଗଛ ଗୁଡ଼ିକ, ଏବଂ ଉନ୍ନ ଉନ୍ନ ଉଚ୍ଚ ହୋଇଥିବା ନାରିକେଳ ବୃକ୍ଷର ଶୋଭା ସେ ଦୁହିଁଙ୍କ ମନରେ ଆନନ୍ଦର ସୁଅ ଖେଳାଇ ଦେଉଥାଏ । ଦୁହେଁ କଥା ହୋଇ ମନ ସୁଖରେ ଘାସ ଚରିଚରି ବୁଲୁଥାନ୍ତି ।

ଏଇ ଅଞ୍ଚଳେ ଅନ୍ୟ ଏକ ଘଟଣା ଘଟେ । ଧଳୀର ପ୍ରେମରେ ପଡ଼ ଜାଳିଆ ଷଣ୍ଢ ଆଉ ଯାଏନା ଗାଈ ଗୋଠକୁ । ସଦା ସର୍ବଦା ଧଳୀ ପଛରେ ହିଁ ବୁଲିବାକୁ ଇଚ୍ଛା କରେ । ଗାଁ ଲୋକ ଭାବନ୍ତି ସେ ଷଣ୍ଢଟା ଗାଈ ଗୋଠରେ ରହୁନ, ଏହାକୁ ଗାଁ ରେ ରଖିବା ଦରକାର କ'ଣ ? ତେଣୁ ଯାକୁ ବାହୁଆ ବଳଦ କରିବାକୁ ଦେଇ ଦେବା । ଗାଁରେ ଯାଣ ବଢ଼ ତାର ବାଡ଼ରେ ପଶି ଫସଲ ଖାଇବା ଛଡ଼ା ଏହା ଦ୍ୱାରା କ'ଣ ବା କାମ ହୋଇପାରିବ ?

ଯୋଗକୁ ବୋଲି ବାହୁଆ ବଳଦ ବାଲ୍ ପାଖ ଗାଁକୁ ଆସିଥିଲେ । ସେମାନଙ୍କୁ ଡକା ହୋଲା, ସେମାନେ ଫାଶ ପକାଇ

ଷଣ୍ଢ଼ଟିକୁ ଧରିଥିଲେ । ଧଳୀର ଆଖିରୁ ଲୁହ ଗଡ଼ିଗଲା । ସେ କାନ୍ଦି ଉଠିଲା । ହମ୍ବା ହମ୍ବା ଚିତ୍କାର କରି ଉଠିଲା । ଧଳୀକୁ ଏପରି ଅବସ୍ଥାରେ ଦେଖି ନେଳା ନୀଳାଞ୍ଜନ। ତାର ଅତି ଆଦରର ଧବଳୀ ଛନା କାହିଁକି କାନ୍ଦୁଛି ? ନୀଳାଞ୍ଜନ ଧବଳୀ ପାଖକୁ ଗଲା ଆଗକୁ ଆଗକୁ । ବାହୁଆ ବଳଦ ବାଲା ଷଣ୍ଢ଼ଟିକୁ ଗଛରେ ବାନ୍ଧି ଟିକିଏ ବିଶ୍ରାମ ନେଉଥାନ୍ତି ।

ନୀଳାଞ୍ଜନ ସବୁ କଥା ବୁଝି ପାରିଲା । ଏହି ଷଣ୍ଢ଼କୁ ନେଇ ଯିବାରୁ ହିଁ ସେ କାନ୍ଦି ଉଠୁଛି । ସେ ଧୀରେ ଧୀରେ ଯାଇ ଦଉଡ଼ିଟିକୁ କାଟି ପକାଏ । ଷଣ୍ଢ଼ ଦଉଡ଼ିରୁ ମୁକୁଳି ଯାଇ ଧାଇଁ ଯାଏ ବସିଥିବା ଲୋକଙ୍କ ପାଖକୁ । ତାର ଅତର୍କିତ ଆକ୍ରମଣରେ ଦୁଇ ତିନିଜଣ ଘଣ୍ଟିଆ ଘାବରା ହୁଅନ୍ତି ।

ସେହି ଦିନୁ ଧଳୀ ଆଉ କଳା ଷଣ୍ଢ଼ଙ୍କ ମିଳନ ହୁଏ । ଦୁହେଁ ଦୁହିଁଙ୍କୁ ଛାଡ଼ି କେବେହେଲେ ରହନ୍ତି ନାହିଁ । ଏହା ଦେଖି ନୀଳାଞ୍ଜନ କଳାଷଣ୍ଢ଼ଟି ସକାଶେ ଗୋଟାଏ ଗୁଳି ଘର ତିଆରି କରିଇଦିଏ । ଧଳୀ ନିଜର ସହିତ ତାର ବିବାହ କରାଯାଏ ।

ବର୍ତ୍ତମାନ ଧଳୀର ତିନୋଟି ଛୁଆ । ଦୁଇଟି ମାଈ ବାଛୁରୀ ଆଉ ଗୋଟିଏ ଅଣ୍ଡିରା ବାଛୁରୀ । ସମସ୍ତେ ଧଳା । ସେମାନଙ୍କୁ ଗୁଡ଼ି ଗୁଡ଼ି କଳାଷଣ୍ଢ଼ କହେ "ତୁ ଯଦି ସେ ଦିନ ନୀଳାଞ୍ଜନକୁ ଡାକି ନେଇ ନ ଥାନ୍ତୁ ତାହା ହେଲେ ଆଜି ମୁଁ ବାହୁଆ ବଳଦ ହୋଇ ମୁଣ୍ଡ ନାଉଁଥାନ୍ତି । ଧଳୀର ଆଖିରୁ ଲୁହ ଗଡ଼ିଯାଏ । ସେ କଳାଷଣ୍ଢ଼ର ଦେହଟାକୁ ଚାଟି ଦେଇ ନିଜର ପ୍ରେମ ପ୍ରଦର୍ଶନ କରେ ।

* X *

# ତିନି ବନ୍ଧୁ

ସବୁ ଦିନ ଭଳି ଆଜି ସଞ୍ଜରେ ପକ୍ଷୀମାନେ ଦେଉଳ ବନ୍ଧ ମୁଣ୍ଡାରେ ଥିବା ବରଗଛ ଉପରେ ଜମା ହୁଅନ୍ତି। ଆଜିର କାହାଣୀ କହିବ କାଉ। ସବୁ ପକ୍ଷୀଙ୍କ ମଧ୍ୟରେ କାଉ ଚତୁର। ଯାହାହେଉ କାଉ ଆସି ପହଞ୍ଚିଲା ଗଛ ଉପରେ। ସେ ନିଜର କାହାଣୀ କହିବାକୁ ଯାଇ କହିଲା।

"ସବୁ ଦିନ ଭଳି ମୁଁ ସେଦିନ ମଧ୍ୟ ସକାଳୁ ସକାଳୁ ଉଠି ପଡ଼ିଥିଲି। ଦୁଇ ଚାରି ଥର କା' କା' ଡାକିବା ପରେ ଆକାଶରେ ଉଡ଼ି ବୁଲିଲି। ଦେଖିଲି ଅଦୂରରେ ଗୋଟିଏ କ'ଣ ମରି ପଡ଼ିଛି। ଖାଇବା ଆଶା ନେଇ ଯାଇ ସେଠାରେ ପହଞ୍ଚିଲି। ତାହା ଏକ କୁକୁରର ମଡ଼ ଥିଲା। ତାର ପାଖରେ ଗୋଟିଏ ବଳିଷ୍ଠ ଷଣ୍ଢ ଠିଆ ହୋଇ କୁକୁରଟିକୁ ଅନିମେଷ ନୟନରେ ଅନାଇ ରହିଥାଏ। କୌଣସି ପଶୁପକ୍ଷୀ ମଡ଼ଟିକୁ ଖାଇବାକୁ ଚେଷ୍ଟା କଲେ ସେ ରାଗରେ ଗରଗର ହୋଇ ମାଡ଼ି ଗୋଡ଼ାଉଥାଏ। ଏହାର କାରଣ କଣ ଜାଣିବାକୁ ଚେଷ୍ଟା କରି ଷଣ୍ଢ ନିକଟକୁ ଯାଇ ତାର ପିଠି ଉପରେ ବସି ପଡ଼ିଲି। କୋମଳ କଣ୍ଠରେ ପ୍ରଶ୍ନ କଲି "ହେ ବଳିଷ୍ଠ ଶକ୍ତିଶାଳୀ ବୃଷଭ! ତୁମେ ଆଜି ଅସହାୟ ଭଳି ଏଠାରେ କାହିଁକି ଠିଆ ହୋଇ ନୟନରୁ ଲୁହ ଗଡ଼ାଉଛ ?"

ଷଣ୍ଢ କାଉକୁ ଧୀରେ ଧୀରେ କହିଲା "ମୋର ଘର ଏଠାରୁ ଅଳ୍ପ ଦୂରରେ ଥିବା ଗାଁରେ । ସେହି ଗ୍ରାମରେ ଜଣେ ଚାଷୀ ଥାନ୍ତି । ତାଙ୍କର ଏକ ସୁନ୍ଦରୀ କନ୍ୟା ଥାଏ । ମୁଁ ଅତି ଛୋଟ ବୟସରେ ହିଁ ମୋର ନିଜ ଘାଉଜାର ଘରୁ ବଡାଡ଼ିତ ହୋଇଗଲି । ଯେତେବେଳେ ମୁଁ କ୍ଷୀର ଛାଡିଲି ଘାଉଆଣୀ ଗ୍ରାହକ କବାଟ ଆଉ ନାଇ କହିଲେ "ରେ ବାଛୁରିଆ ! ତୋର ଆଉ ଏହି ଘରେ ସ୍ଥାନ ନାହିଁ । ତୁମେ ଆମର କୌଣସି କାମରେ ଆସିବ ନାହିଁ । ବର୍ତ୍ତମାନ ତୁମେ ପଦାରେ ରହି ଖାଇ ପିଇ ଜୀବନ କାଟ" ।

ଏପରି ଏକ ନିଷ୍ଠୁର ବାକ୍ୟ ଶୁଣି ମୁଁ କାନ୍ଦି ପକାଇଲି । ମୋର ମାଆର ମୁହଁକୁ ଅନାଇଲି । ମାଁକୁ ପଚାରିଲି, ମୁଁ ଷଣ୍ଢ ହେଲି ବୋଲି ମୋର ଦୋଷ କ'ଣ ? ତୁ କିଛି କହୁନୁ କାହିଁକି ? ମାଁ ମୋତେ କହିଲେ, ବାହାରେ ତୁ ଏଠୁ ଚାଲିଯା । ତୁ ପୁଣି ଏଠାକୁ ଆସିବାକୁ ଚେଷ୍ଟା କରିବୁ ତାହାହେଲେ ତୋର ପିଠିରେ ପ୍ରହାର ପଡ଼ିବ । ମା'ର ଆଖିରେ ମୋ ପ୍ରତି ସ୍ନେହ ଦେଖି ମୁଁ ଛୁଆ ହୋଇଗଲି । ବର୍ଷକର ମଲ୍ଲମଣିଆ ପିଲାଟିଏ ମୁଁ । ଏମାନଙ୍କ କିଛି କାମରେ ଲାଗିବନି ଜାଣି ମୋର ମା'ଠୁ ସମସ୍ତ କ୍ଷୀର କାଢ଼ି ନେଉଥାନ୍ତି ଘାଉଆଣୀ ।

ମୁଁ ପଦାକୁ ଆସି ଦେଖିଲି ଜଗତଟା ନିସ୍ତବ୍ଧ । ଅଳ୍ପ ଦୂରରେ ଦେଖି ଗୋଟିଏ ବରଗଛ ତଳେ ଏବଂ ବୁଢ଼ା ଗୁଡାଟା ମଣ୍ଡା ବଳଦ ଓ ରୁଗ୍ଣ ଗାଈ ଗାଁ ମଝିର ସାମାନାରେ ଶୋଇଛନ୍ତି । ସେହିଠାରେ ଭଗବାନଙ୍କୁ ପ୍ରପଦ ଡାକିଲି • ଏବଂ ଅଭ୍ୟାଗତ

ମାନେ କିନ୍ତୁ ଛାଡ଼ିଦେଲେ ସେହି ଅଇଁଠା ଭାତ ଆଉ କେଲି ଚନ ପାଇଁ ସେମାନେ ଅନାଇ ରହିଥାନ୍ତି । ମୋର ସେଠାକୁ ଯିବାକୁ ଆଦୌ ଇଚ୍ଛା ନ ଥିଲା କିନ୍ତୁ ହଡ୍ଡାବଳଦଟା ଡାକ ପକାଇଲା ହଇରେ କୁଆ, ଚଢ଼େଇ ଆସେ, ଅଇଁଠା କଦଳୀ ପତ୍ରଗୁଡ଼ାକୁ ଚାଟିପକା । ମୋର ଉପରେ ଏଗୁଡ଼ାକ ପଡ଼ୁଛି ସତ, କିନ୍ତୁ ମୁଁ ଆଉ ଅଳ୍ପଦିନର ଅତିଥି, ତୁ ତ ପିଲାଟା, ବହୁତ ଦିନ ବଞ୍ଚିବୁ । ତାର କଥା ଶୁଣି ମୁଁ ଅବାକ୍ ହୋଇ ଗଲି । ଆମ ପଶୁ ମାନଙ୍କ ମଧ୍ୟରେ ମଧ୍ୟ ଦୟା ଧର୍ମ ବୋଲି ଗୋଟାଏ ଜିନିଷ ଅଛି ତାହା ବର୍ତ୍ତମାନ ଜାଣି ପାରିଲି ।

ସେଠାରେ ଦିନେ, ଦୁଇ ଦିନ ରହିଲି ପରେ ଥରେ ଗୋଟିଏ ଝିଅ ମୋ ଆଡ଼କୁ ଧାଇଁ ଆସିଲା, ମୋତେ ଅଣ୍ଡାଳିଲା କିନ୍ତୁ ମୁଁ ତାକୁ କିଛି କଲିନି । ତା ପାଖରେ ଠିଆ ହୋଇ ତାର ହାତକୁ ଚାଟିବାକୁ ଲାଗିଲି । ଏହା ଦେଖି ସେ ମୋର କାନ ଧରି ଟାଣି ନେଲା ନିଜ ଘରକୁ । ସେ ହେଉଛି ସେହି ଘରର ଚନ୍ଦ୍ରକାନ୍ତଙ୍କ ଝିଅ ସରୋଜ । ମୋତେ ଟେକି ଦେଲା ଆଉ ମୋର ପିଠିରେ ହାତ ବୁଲାଇ ଦେଲା । ଏକ ସୁନ୍ଦରୀ ଝିଅର ହାତ ବାଜି ମୁଁ ଭାଗ୍ୟବାନ ମନେ କଲି । ସେହି ଘରର ବାଡ଼ିରୁ ଏକ ଛନକିଆ ବାଛୁରି ଛୁଆର ଡାକ ଶୁଭିଲା । ସେହି ମାତ୍ର ବାଛୁରି ଆସି ମୋର ନିକଟରେ ଠିଆ ହେଲା । ମୋତେ ତାର ଚଳ ଚଞ୍ଚଳ ନୟନରେ ଅନାଇ ପୁଣି ଦୌଡ଼ିଗଲା ଘର ଭିତରକୁ ।

ତା ପରଠୁ ପରେ ଏହି ଛୋଟ କୁକୁର ଛୁଆଟି ଘର ଭିତରୁ ବାହାରି ମୋ ଆଡ଼କୁ ମାଡ଼ି ଆସିଲା । ତାର ଠିକଠିକ

ଗୋଡଗୁଡ଼ାକରେ ସେ ଚାଲୁଥାଏ । ଯେ କୌଣସି ଜନ୍ତୁ ଦେଖିଲେ ଗୁର୍ଡ଼ି ଦେଉଥାଏ । ମୋତେ ଦେଖି ଟିକିଏ ଭୋ ଭୋ କଲା । ସବେଳ ଧାଇଁ ଆସି ତାକୁ ହାତରେ ଟେକି ନେଇ ମୋ ପାଖକୁ ଆଣି କହିଲ "ଆଜଠାରୁ ଆମେ ଚାରିଜଣ ସାଥୀ । ଯା ନାମ ମୁଁ କାଳିଆ ରଖିଲି । ଯା'ର ରଙ୍ଗ କଳା ନା ? ତୋତେ ଏହି ନାଆଁଟି କିପରି ଲାଗୁଛି ? କୁନ୍ତଳା, କାଳିଆ ଆଉ ଭୁ ଶୁକୁଟିଆ, ସମସ୍ତେ ମିଳିମିଶି ଖେଳିବା । ସେହି ଦିନୁ ବାଛୁରୀ, ତଣ୍ଟୃ, କୁକୁର ଆଉ ମଣିଷ ଆମେ ଚାରିଜଣ ସାଥୀ ହୋଇଗଲୁ ।

କାଳିଆ ମୋ ସାଥିରେ ହିଁ ଥାଏ । ମୁଁ ଟିକିଏ ବୁଲାବୁଲି କରେ ଏବଂ ସେ ମୋର ସାଥିରେ ହିଁ ଥାଏ । କେଉଁ ବୁଦା ମୂଳେ କିମ୍ବା ଘାସ ପଡ଼ିଆରେ ଖେଳୁଥାଏ । ଥରେ ଥରେ ସେ ଜାଉନ୍ତା ଟେକୁଆ ଛୁଆ ଧରି ଆଣେ । ଧୀରେ ଧୀରେ ବାଛୁରୀ କୁନ୍ତଳା ବି ବଡ଼ ହୋଇଯାଏ । ତାର ଶରୀରରେ ଅନୁପମ ସୌନ୍ଦର୍ଯ୍ୟ ଭରିଯାଏ । ଆମେ ତିନି ହେଁ ଏକା ସାଙ୍ଗରେ ବୁଲିବାକୁ ଲାଗୁ । ଝିଅଟି ମଧ୍ୟ ବଢ଼ି ଚାଲେ । ସେ ଦିନକୁ ଦିନ ଲାଜକୁଳୀ ହୋଇ ଉଠେ । ତା ଦେହ ଆଉ ଶରୀରର ରଙ୍ଗ ବଦଳିଯାଏ ।

ଦିନକର କଥା । ମୁଁ ଗୋଟିଏ ଘାସ ପଡ଼ିଆରେ ଥିବା ଗଛମୂଳେ ଶୋଇଥାଏ । କେତେ ଲୋକ ମୋତେ ଆସି ବାନ୍ଧି ପକାନ୍ତି । ମୁଁ କିଂକର୍ତ୍ତବ୍ୟବିମୂଢ଼ ଭଳି ରହିଥାଏ । ଏହି ସମୟରେ କାଳିଆ ଆସି ଜଣେ ଦୁଇଜଣଙ୍କୁ କାମୁଡ଼ି ଦିଏ । ସେମାନେ ଭୟରେ ପଳାନ୍ତି । କୁନ୍ତଳା ଯାଇ ଝିଅଟିକୁ ଡାକି ଆଣେ । ସରୋଜ ମୋର ବନ୍ଧନ ଫିଟାଇ ଦିଏ ।

ଅନ୍ୟ ଏକ ଦିନର କଥା । ଏକ ବିରାଟ ଷଣ୍ଢ ହଠାତ୍ ମୋତେ ଆକ୍ରମଣ କରେ । ମୁଁ ବା ମୋଠାରୁ ବୟସରେ ବଡ଼ ଏବଂ ବଳବାନ ଷଣ୍ଢଟି ସହିତରେ କିପରି ଲଢ଼ିବି ? କୁନ୍ତଳା ଅବାକ୍ ହୋଇ ଚାହିଁ ରହେ । ଏହି ସମୟରେ କାଳିଆ ଆସି ଷଣ୍ଢ ଉପରେ ଆକ୍ରମଣ କରେ । ଆମେ ଦୁହେଁ ମିଶି ତାକୁ ପରାସ୍ତ କରୁ । ଏହାପରେ ପ୍ରେମ ଆଉ ସ୍ନେହରେ ଗୁଡ଼ିଏ ଦିନ ବିତେ । କିନ୍ତୁ ହଠାତ୍ ଦିନେ ସୁରେନ୍ଦ୍ରଙ୍କୁ ଦେଖାଯାଏ । ସରୋଜ କାରରେ ବସି ନେଇଯାଏ । ଆମେ ଦୁଃଖରେ ଭାଙ୍ଗିପଡ଼ୁ । କୁନ୍ତଳାକୁ ମଧ୍ୟ ସରୋଜ ସାଥିରେ ପଠାଇ ଦିଆଯାଏ । ଏହି ଶୋକ ଆଘାତ ଆମକୁ ଭଲ ଲାଗେ ନାହିଁ । ସେ ଯିବାର ପାଞ୍ଚ ସାତ ଦିନ ହେଲାଣି, କାଳିଆ ନ ଖାଇ ନ ପିଇ ମରିଯାଏ । ମଲାବେଳକୁ କହେ "ସରୋଜକୁ ଆସିଲେ କହିବୁ, "ମୁଁ ତାର କୋଳରେ ପୁଅ ହୋଇ ଜନ୍ମ ହେବି । ମୁଁ ବି ଏଠି ବସିଛି, ଏହି ବାଟ ଦେଇ ସରୋଜ ଫେରିବ । ଯଦି ସରୋଜ ଆସିବ ତାହା ହେଲେ ତାକୁ ଏହି ଖବର ଦେଇ ମୁଁ ମରିଯିବି । ମୁଁ ବି ସେହି ସରୋଜ ଗର୍ଭରେ ଜନ୍ମ ହେବି । କାଳିଆର ଭାଇ ହେବି ଆଉ କୁନ୍ତଳାର କ୍ଷୀର ପିଇ ହୃଷ୍ଟପୁଷ୍ଟ ହେବି ।

---

# କଇଁଚ ଓ କଙ୍କଡ଼ା

ରାତିର ଅନ୍ଧାରଟା ବଢି ଚାଲିଥାଏ । ପକ୍ଷୀମାନେ ଧୀରେ ଧୀରେ ଆସି ବରଗଛର ଡାଳରେ ବସିବାକୁ ଆରମ୍ଭ କରିଥାନ୍ତି । କେତେବେଳେ ଶିଆଳ ମାନଙ୍କ ରଡ ଶୁଣିବାକୁ ମିଳୁଥାଏ । ସେଦିନ ପୋଖରୀ କଥା କହିବାର ପାଳି । ସେ ଗଳା ଖଙ୍କାରି ମାରି ନିଜର କାହାଣୀ ଆରମ୍ଭ କଲା ।

"ଏଠାରୁ ଅଳ୍ପ ଦୂରରେ ଆନନ୍ଦବନ । ଏହା ଏକ ବଡ଼ ଆକାର ପୋଖରୀ । ଚାରି ପଟରେ ଅନେକ ଗଛଲତା ଅଛି । ଦୁଇ ପଟେ ଅନେକ ପାହାଡ଼ । ଏହି ପୋଖରୀକୁ ଲାଗି ବ୍ୟାଘ୍ରଦେବୀଙ୍କ ମନ୍ଦିର । ଏହି ଗାଁର ଚାରିପଟରେ ଠାକୁରାଣୀ, ଗ୍ରାମ୍ୟ ଦେବୀ, ବ୍ୟାଘ୍ରଦେବୀ ଆଉ ଦୁର୍ଗାଙ୍କର ମନ୍ଦିର ଅଛି । ଏହି ବ୍ୟାଘ୍ର ଦେବୀ ମନ୍ଦିରର ଅଳ୍ପ ଦୂରରେ ଗୋଟିଏ ବରଗଛ ଅଛି । ସେହି ବରଗଛରେ ମୁଁ ବସି ଆନନ୍ଦ ବନକୁ ଦେଖେ । ଅନେକ ଲୋକ ଏହିଠାକୁ ସ୍ନାନ କରିବାକୁ ଆସନ୍ତି । ଏହି ପୋଖରୀରେ ଏକ ବଡ଼ କଇଁଚ ଥାଏ । ସେ ସମୟେ ସମୟେ ପଦାକୁ ବୁଲି ଆସେ । ମୁଁ ଗଛ ଉପରେ ରହି ତାକୁ ଡାକେ "କଇଁଚ ଭାଇ ! ଏଣିକି ଆସ" ସେ ହସି କହେ-ମୁଁ ଧୀରେ ଧୀରେ ତୋର ପାଖକୁ ଯିବା କଷ୍ଟକର । ତୁମେ ଏହି କୂଳରେ ଥିବା ଗଛ ଉପରକୁ ଆସ । ମୁଁ ପୋଖରୀ ନିକଟରେ ଥିବା ଗଛ ପାଖକୁ ଗଲି ।

ସେହି ପୋଖରୀ ପାଣି ଗ୍ରୀଷ୍ମଋତୁରେ ଶୁଖିଯାଏ । ପଦ୍ମଫୁଲରେ ଭରା ଏହି ପୋଖରୀ ସାଧାରଣତଃ ଅତ୍ୟନ୍ତ ସୁନ୍ଦର ଦେଖାଯାଉଥାଏ । ଏହି କଇଁଚଟି ପ୍ରତ୍ୟେକ ଦିନ ଆସେ । ତାର ସାଥିରେ ଆସିଥାଏ ଗୋଟିଏ ବିରାଟ ଆକାରର କଙ୍କଡ଼ା । ଉଭୟେ ଅନେକ ଦିନ ହେଲା ସେହି ପୋଖରୀରେ ରହୁଥାନ୍ତି । ସେଠାରେ ପାଣି ଶୁଖିଗଲେ ସେମାନେ ତାର ପାଖରେ ଥିବା ଅନ୍ୟ ଏକ ପୋଖରୀକୁ ପଳାଇଯାନ୍ତି । କଙ୍କଡ଼ାଟି ଦୂରରୁ କେଉଟ ମାନେ ଆସିବାର ଲକ୍ଷ୍ୟ କରୁଥାଏ ଦାଯ ପାଣି ମଧ୍ୟରେ ବୁଡାରେ ରହି ।

ଯଦି କେହି କେଉଟ ସେମାନେ ରହିବା ଯାଗାକୁ ଆସନ୍ତି ତାହା ହେଲେ ସେମାନେ ଅନ୍ୟ ସ୍ଥାନକୁ ପଳାଇଯାନ୍ତି ଏପରି ସୁଖରେ କେତେ ଦିନ କଟିଲା । ମୁଁ ମଧ୍ୟ ସେମାନଙ୍କର ବନ୍ଧୁ ହେଲି । ମୁଁ କହିଲି "ଯଦି ସେମାନଙ୍କ ପ୍ରତି କିଛି ବିପଦ ଆସେ ତାହା ହେଲେ ମୁଁ ବୋବାଳି ଛାଡ଼ିବି । ସତକୁ ସତ ମୁଁ ବନ୍ଧ ଉପରର ଗଛ ଉପରେ ବସିବାକୁ ଯାଉଛି ଅନେକ ଧୀବର ଜାଲ ଧରି ପୋଖରୀଟିକୁ ଘେରାଉ କରିବାକୁ ଲାଗିଲେ । ମୁଁ ବା ଆଉ କ'ଣ କରନ୍ତି, ଗୋଟିଏ ବୋବାଳି ଛାଡ଼ିଲି । ଦୁଇ ବନ୍ଧୁ ମୋର ବୋବାଳି ଶୁଣି ଧୀରେ ଧୀରେ ଗଛମୂଳକୁ ଆସିଲେ । ଧୀବର ମାନେ କିଛି ସମୟ ମାଛ ଧରିବା ପରେ ମୁଁ ବସିଥିବାର ଗଛ ମୂଳରେ ଆସି ଆଶ୍ରୟ ନେଲେ । ସେଠାରେ ଥିବା ବିରାଟ କଇଁଚଟା ଉପରେ ଜଣେ ଧୀବରର ଆଖି ପଡ଼ିଲା । ସେ ତାକୁ ଧରି ନେଇ ଡାଲାରେ ପକାଇଦେଲା । କଙ୍କଡ଼ା ବା ମୁଁ ବା ଆଉ କରନ୍ତା କଣ ? ସେ

କ'ଣ କରିବ ? ମୁଁ ଗଛରେ ରହି ଗୋଟିଏ ବିକଟାଳ ରଡ଼ି ଦେଲି । ମାଛ ଚୋକେଇବାଲା ଭୟ ପାଇ ସେହିଠାରେ ଚୋକେଇଟି ଛାଡ଼ିଦେଲା । ସବୁ ଉପରେ ଥିଲା କଇଁଚ । ସେ ତଳେ ପଡ଼ିଯାଇ ଧୀରେ ଧୀରେ ବୁଢ଼ା ଆଡ଼କୁ ଅଗ୍ରସର ହେଲା ।

କଙ୍କଡ଼ାଟି ଧୀରେ ଯାଇ ମାଛ ଚୋକେଇବାଲାର ଗୋଡ଼ଟିକୁ କାମୁଡ଼ିଦେଲା । ସେ ଚିତ୍କାର କରି ଉଠିଲା । ଏହି ଅବସରରେ କଇଁଚ ପୋଖରୀରେ ପଶିଗଲା । ପେନ୍ଥୁଶଠ ଶୁଣି କେଉଟ ମାନେ ଆଉ ମାଛ ଧରିବାକୁ ଇଚ୍ଛା କଲେନି । କଇଁଚ ବଞ୍ଚିବାରୁ ଆମେ ସମସ୍ତେ ଆନନ୍ଦିତ ହେଲୁ । ଏବେ ମଧ୍ୟ ମୁଁ ଭ୍ରଟେହ ତାଙ୍କ ସହ ଯାଇ କଥାବାର୍ତ୍ତା କରି ଆସେ ।

ଏହା କହି ପେନ୍ଥୁ ଭୁନ ହେଲା । ପକ୍ଷୀମାନେ ଗପ ଶୁଣି ଶୁଣି ଢୁଳେଇବାକୁ ଲାଗିଲେ । ରାତି ପାହି ଆସୁଥିବାର ଜାଣି କାଉ ସଜବାଜ ହେଲା ଉଡ଼ିବାକୁ ।



# ଅପେକ୍ଷା

ଦେଉଳ ପୋଖରୀ ହୁଡ଼ାରେ ସମସ୍ତ ପକ୍ଷୀ ବରଗଛରେ ବସି ସାରିଥାନ୍ତି । ସମସ୍ତେ ଅପଲକ ନେତ୍ରରେ ଅନାଇ ରହିଥାନ୍ତି କୋଇଲିର ମୁହଁକୁ । ଆଜି କୋଇଲି କଣ ନୂତନ କଥା ଶୁଣାଇବ, ଏହା ସମସ୍ତେ ଆଶା କରୁଥାନ୍ତି । ସେ ଦିନ କୋଇଲି ଟିକିଏ ଗମ୍ଭୀର ଦେଖାଯାଉଥାଏ । କେତେ ଧୀରେ ଧୀରେ ମଧୁର ସ୍ୱରରେ କାହାଣୀ କହିବାକୁ ଆରମ୍ଭ କଲେ- "ବସନ୍ତ ଋତୁ । ଚଇତାଳି ପବନ ମୋତେ ଆନନ୍ଦ ଦେଉଥାଏ । ମୁଁ ଏହି ସ୍ଥାନରୁ ଉଡ଼ି ଉଡ଼ି ଅନେକ ଦୂର ଚାଲିଗଲି । ଦେଖିଲି ଏକ ବିରାଟ ଆମ୍ବ ତୋଟା । ଆମ୍ବ ତୋଟାକୁ ଲାଗି ଅନେକ ନଡ଼ିଆ ଗଛ । କଦଳୀ ଗଛ ମଧ୍ୟ ଅନେକ ଗୁଡ଼ିଏ ଅଛି । ସେଠାରେ ଅଳ୍ପ କ୍ଷଣ ବିଶ୍ରାମ କରି ମୁଁ ଆଉ ଅଳ୍ପ ଦୂର ଗଲି । ସେଠାରେ ଦେଖିଲି ଏକ ଦେବାଳୟ । ମୁଁ ସେହି ଦେବାଳୟ ମଧ୍ୟରେ ଥିବା ଗୋଟିଏ ଆମ୍ବ ଡାଳରେ ବସି କୁହୁ କୁହୁ ସ୍ୱରରେ ଗାଇବାକୁ ଲାଗିଲି । ମୋର ମଧୁର ସ୍ୱରରେ ମୁଗ୍ଧ ହୋଇ ଅଳ୍ପ ଦୂରରେ ବସିଥିବା ଏକ ସୁନ୍ଦରୀ ରମଣୀ ଆସି ସେଠାରେ ପହଞ୍ଚିଲା । ତାର ରୂପର ମାଦକତା କହିଲେ ନ ସରେ ।

ସେ ସେହି ଗଛ ତଳେ ବସି ମୋତେ ସମ୍ବୋଧନ କରି କହେ, "ହେ କୋଇଲି ତୁ ତ ସବୁ ଆଡେ ବୁଲୁଛୁ । ମୋ ପରି ଦୁଃଖିନୀ ପାଇଁ ତୁମେ ଗୋଟିଏ କାମ କରି ଦିଅ । ମୁଁ ଏଇ ପାଖରେ

ଗୋଟିଏ ଗାଁର   ଅ। ମୋର ବାପା ଆଖ ପାଖ ଗାଁର ସ୍କୁଲ ଶିକ୍ଷକ। ସେ ସରଳ ଆଉ ଶାନ୍ତ। ମାଆ ଏକ ସରଳା ଓ ଧୀରସ୍ଥିର ସ୍ତ୍ରୀ। ସକାଳୁ ଉଠି ଘରକାମରେ ଲାଗିବା ହେଲା ତାଙ୍କର ବେଉସା। ସେ ତାଙ୍କର ଘର ବାହାରେ ଏକ ବରାଠ ଦେଇଥିବା ଅଛି ସେ କଥା ଆଦୌ ଜାଣେନ୍ତି ନାହିଁ।

ଆମର ଗୃହକର୍ମ ସହ ଅଳ୍ପ କିଛି ଜମି ଅଛି। ସେଥିରୁ କିଛି ଧାନ ଆଦାୟ ହୁଏ। ବାପାଙ୍କର ଦରମା ଆସେ। ଗାଁ ମିଲରେ ବ୍ୟବସାୟ କରନ୍ତି ମୋର କକା। ଏପରି ଆମେ ସମସ୍ତେ ଭଲରେ ଚଳିଯାଉ।

ମୁଁ ଧୀରେ ଧୀରେ ବଡ଼ ହେବାକୁ ଲାଗେ। ମୋର ଗୋରା ଦେହକୁ ଫ୍ରକ ଭଲ ମାନେ। ମୁଁ ଯେଉଁ ସମୟରେ ସପ୍ତମ ଶ୍ରେଣୀରେ ପଢ଼େ ଆମ ଗାଁ ପାଖରେ ମାଉସୀ ଆମ ଘରକୁ ଆସିଥାନ୍ତି। ତାଙ୍କର ସଙ୍ଗରେ ଆସିଥାଏ ସୁକାନ୍ତ। ସେ ମେଟ୍ରିକୁଲେସନରେ ପଢ଼େ। ତାର ସୁନ୍ଦର ଚେହେରା ସହ ହସ ହସ ମୁଖ ମୋତେ ବ ଆକର୍ଷଣ କରିଥାଏ। ଆମ ଦୁହିଁଙ୍କୁ ଅନାଇ ଦୁଇ ଭଉଣୀ ହସୁଥାନ୍ତି। ଗୋଟିଏ ଝାଉଁଗଛ ମୂଳେ ବସି ସୁକାନ୍ତ ମୋତେ କଣେଇ କଣେଇ ଅନାଉଥାଏ। ମୁଁ ମଧ୍ୟ ବାଳିକର ଢଆର କରି ସେହି ଆଡ଼କୁ ଅନାଏ। ସୁକାନ୍ତ ଧୀରେ ଧୀରେ ମୋର ପାଖକୁ ଆସି କହେ "ସାରିକା! ତୁମେ ଏତେ ବଡ଼ ଆଉ ଏତେ ସୁନ୍ଦର ହୋଇ ସାରିଲଣି। ତୁମର ଏ ରୂପ ଯୌବନ ଉପଭୋଗ କରିବାର ଭାଗ୍ୟ କାହାର ବା ଥିବ। ମୁଁ ହସି ଦିଏ। ମୋର ଧଳା ଦନ୍ତପନ୍ତି ଦେଖି ସୁକାନ୍ତ ମନ ମୁଗ୍ଧ ହୋଇ ଉଠେ।

ସେ କହି ପକାଏ "ତୁମର ଦାନ୍ତଗୁଡ଼ାକ କେଡ଼େ ଧଳା ତ ?" ମୁଁ ହସିଦିଏ । ସେ ମୋର ନିକଟରେ ବସିପଡ଼ି କହନ୍ତି ତୁମେ ସେ ଘରର ମାଲିକାଣୀ ହେବ କି ? ମୁଁ ମୁଣ୍ଡ ଟିଙ୍ଗାରି କହେ ମୋର ଭାଗ୍ୟ ଭଲ ଥିଲେ ହେବ ।"

ସେ ଚାଲି ଯାଆନ୍ତି । ପରେ ପରେ ସେ ଚିଠି ଦିଅନ୍ତି । ସେ କୁଆଡ଼େ କଟକରେ ପଢ଼ୁଛନ୍ତି । ଆଜକୁ ଚାରି ବର୍ଷ ବିତି ଗଲାଣି । ମୋତେ ଅଠର ବର୍ଷ ହୋଇ ସାରିଲାଣି । ସେ କହିଥିଲେ ସେ ସେଇଦିନ ଆସିବେ ଏହିଠାରେ ହିଁ ସାକ୍ଷାତ କରିବେ । ତେଣୁ ପ୍ରତି ରବିବାର ଦିନ ମୁଁ ଘରୁ ଲୁଚି ଆସି ତାଙ୍କୁ ଅପେକ୍ଷା କରେ । ମୁଁ ମୋର ମନକଥା ମୋର ବାପ ମାଙ୍କୁ କହି ଦେଇଛି । ଚାରି ପାଞ୍ଚ ବର୍ଷ ହେଲା ତାଙ୍କୁ ଦେଖିନି, ହେଲେ ମଧ୍ୟ ତାଙ୍କର ରୂପଟି ମୋର ଆଖି ଆଗରେ ନାଚି ଉଠେ । ମୋର ବାପା'ମାଁ ନିଜର ଜାତିର ଏବଂ ବନ୍ଧୁରେ ବନ୍ଧୁ କରିବାର ପକ୍ଷପାତୀ । ତେଣୁ ଆମ ବିବାହରେ ବାଧା ନାହିଁ ।

କିନ୍ତୁ ଆଜି ଥରେ ମୋର ମନରେ ସନ୍ଦେହ ଜାତ ହୁଏ । ବହୁତ ପାଠ ପଢ଼ି କ'ଣ ସେ ବିବାହ କରିବେ ? ଏହି ମଫସଲର ଝିଅ କ'ଣ ତାଙ୍କ ମନକୁ ମୁଗ୍ଧ କରିପାରିବ ? ଯା ଦେଖିଲି । ସେ ମନା ନ କଲା ପର୍ଯ୍ୟନ୍ତ ମୁଁ ତାଙ୍କ ଅପେକ୍ଷାରେ ରହିଲି । ଆଜି ଯଦି ସେ ମନା କରିଦିଅନ୍ତି ତାହେଲେ ମୁଁ ସଦାସର୍ବଦା କୁମାରୀ ରହିବି ।

ହେ ପକ୍ଷୀମାନେ ମଣିଷର ଏତେ ପ୍ରେମ ଦେଖି ମୁଁ ଅଶ୍ରୁମୟୀ ହୋଇ ଉଠିଛି । ସର୍ବ ଜଗତ ମଧ୍ୟ ଏଭଳି ପ୍ରେମ ନକଲ କରିବା ଉଚିତ୍ ।

ପକ୍ଷୀମାନେ ମଣିଷର ପ୍ରେମର କାହାଣୀ ଶୁଣି ଅବାକ୍ ହୋଇ ଉଠନ୍ତି । ଏଇ ଆଡେ ରାତି ପାହି ଆସୁଥାଏ ।

# ବାଘୁଣୀ ସରିତା

ରାତିର ଗମ୍ଭୀରତା ବଢ଼ିବା ସଙ୍ଗେ ସଙ୍ଗେ ଦେଉଳ ବନ୍ଧର ହୁଡାରେ ଥିବା ବରଗଛରେ ପକ୍ଷୀମାନେ ରୁଣ୍ଡ ହେବାକୁ ଲାଗିଥାନ୍ତି । ସେ ଦିନ କାହାଣୀ କହିବାକୁ ଯାଇ ଶାଗୁଣା କହିଲା- ଆଜକୁ ଅନେକ ଦିନ ତଳେ ମୁଁ ମୋର ମା ସଙ୍ଗେ ବୁଲି ବୁଲି ଯାଇ ପହଞ୍ଚିଲି ଏକ ସୁନ୍ଦର ଅରଣ୍ୟରେ । ସେହି ଅରଣ୍ୟଟି ଏକ ବିରାଟ ଉଚ୍ଚ ଜାଗାରେ ଥିଲା । ଅନେକ ରକମର ବୃକ୍ଷଲତାରେ ଭରି ରହିଥିଲା ଏହି ସୁନ୍ଦର ବନଟି । ଏହି ଅରଣ୍ୟଟି ଏକ ସୁନ୍ଦର ପାହାଡ଼କୁ ନେଇ ଗଢ଼ି ଉଠିଥିଲା । ପାହାଡ଼ ଉପରେ ଥିଲା ଏକ ବାଉଁଶ ବଣ । ତାର ଭିତରେ ରହୁଥିଲେ ଅନେକ ବାଘୁଣୀ ।

ବାଘୁଣୀଟି ଟିକିଏ କଡ଼ା ମିଜାଜର ଥିଲା । ସକାଳୁ ସକାଳୁ ଉଠି ସେ ବାଉଁଶ ବଣ ଭିତରେ ଜଗି ରହୁଥାଏ ଶିକାର ସକାଶେ । ତାର ଏହି ସ୍ୱରୂପ ମିଜାଜ ଦେଖି କୌଣସି ବାଘ ତାକୁ ପ୍ରେମ ନିବେଦନ କରିବାକୁ ଭୟ କରୁଥିଲେ । ଦିନେ

ଦଣ୍ଡକାରଣ୍ୟରୁ ଗୋଟିଏ ବାଘ ଧୀରେ ଧୀରେ ଆସି ପହଞ୍ଚିଲା ଏହି ଘଗାରେ। ତଳେ ଗୋଟିଏ ଉଷ୍ମ ପ୍ରସ୍ରବଣ। ନାମଟି ତାର ତପ୍ତପାଣି।

ତଳେ ଥାଇ ଗୋଟିଏ ବୁଢ଼ୀ ବାଘୁଣୀ ସହ ଭେଟ ହେଲା ଯୁବକ ବାଘର। ବୁଢ଼ୀ ବାଘୁଣୀ ପାଖକୁ ଯାଇ ଯୁବକ ବାଘଟି ନମସ୍କାର କରି କହିଲା — "ମାଉସୀ ! ମୁଁ ଦଣ୍ଡକାରଣ୍ୟରୁ ଆସିଛି। ମୁଁ ଶୁଣିଛି ଏହି ଅଞ୍ଚଳରେ ଏକ ସୁନ୍ଦର ବାଘୁଣୀ ଅଛି। ତାର ରୂପ ଯୌବନ ପ୍ରଶଂସାର ପାତ୍ର। ବିଶେଷ ଆହେ ତାର ନୃତ ଗୁଣର ପ୍ରଶଂସା ଶୁଣାଯାଉଛି। ସୁନ୍ଦରବନଠାରୁ ଆରମ୍ଭ କରି ସାଲୁର ଘାଟିର ବାଘମାନେ ତାର ପ୍ରେମ ପାଇବା ସକାଶେ ବ୍ୟାକୁଳ ହୋଇ ରହିଛନ୍ତି। ତାକୁ କପରି କାବୁ କରିବାକୁ ହୁଏ ମୋତେ କହିବେ। ମୁଁ ତୋର ନିକଟରେ ଚିର ଋଣୀ ରହିବି ଏବଂ ଆମର ପରିବାରରେ ତୁମେ ମୋର ମାଉସୀ ଭଳି ରହିବ। ଆମର ଛୁଆ ପିଲା ହେଲେ ସେମାନଙ୍କର ଯତ୍ନ ନେବ। ତୁମକୁ ଆଉ ଏକେଲା ରହିବାକୁ ପଡ଼ିବ ନାହିଁ !

ବୁଢ଼ୀ ବାଘୁଣୀ ହସି ଦେଇ କହିଲା "ଠିକ ଅଛି। ତୁମେ ପାଖ ପାଖରେ ରହିବ, ବାଘୁଣୀକୁ କଷ୍ଟ କହିବ ନାହିଁ। ପ୍ରେମ ନିବେଦନ କରିବ ନାହିଁ।"

ଯୁବକ ବାଘଟି ଧୀରେ ଧୀରେ ଉପରକୁ ଚଢ଼ିଲା। ଦେଖିଲା ବାଉଁଶ ଲଟାରେ ବାଘୁଣୀ ଶୋଇଛି। ଯୁବକୁ ଦେଖି ବାଘୁଣୀ ଉଠିଲା। ନିଜର ଶରୀର ଝାଡ଼ଝୁଡ଼ ହୋଇ ଟିକଏ ଫୁଲି ଉଠିଲା। ବାଘକୁ ଦେଖାଇ ହୋଇ ହାଇ ମାରିଲା। ଯେତେବେଳେ ବାଘୁଣୀ ଦେଖିଲା ଯେ ବ ... ପାଖକୁ

ଆସି ପ୍ରେମ ନିବେଦନ କରୁନ୍ତି, ସେ ଆତୁରେ ରହିଯାଇ ଲାଙ୍ଗୁଳ ପିଟିଲା। ବାଘ କିନ୍ତୁ ଗଛମୂଳେ ବସି ତାକୁ ଅନାଇ ରହିଥାଏ। ବାଘୁଣୀ ମନରେ ଭାବିଲା ଏହାକୁ କଣ ମୋର ଦୁଷ୍ଟାମି ଜଣା ନାହିଁ। କେଉଁଠାରୁ ଆସି ମୋର ମୁହଁଟାକୁ ବଲ ବଲ କରି ଚାହାଁଇ ରହିଛି। ଦେଖିବି ଏହାକୁ ମଜା ଚଖାଇବି।

ସେ ଧୀରେ ଧୀରେ ପାଦ ପକାଇ ବାଘ ପାଖକୁ ଗଲା। ବାଘ ଯେମିତି ମୂକ ପିଲାଟି ଭଳି ବସି ରହିଛି। ବାଘୁଣୀ ତାର ଗାଲକୁ ନିଜ ପଞ୍ଝାରେ ଗୋଟାଏ ଝାମ୍ପୁଡ଼ା ଲଗାଇଲା ଆଉ ହସି ହସି କହିଲା ହେ ପରଦେଶୀ ବନ୍ଧୁ! ଏହି ଅରଣ୍ୟର ମୁଁ ହେଉଛି ରାଜଜେମା। ତୁମର ଟିକିଏ ହେଲେ ଲଜ୍ଜା ବି ନାହିଁ ପର ଝିଅ ଉପରେ ଆଖି ପକାଇବାକୁ। ଯୁବକ ବାଘଟି ସବୁ ଶୁଣିଲା କିନ୍ତୁ କିଛି କହିଲାନି। ନଖ ବାଜି ଟିକିଏ ରକ୍ତ ବୋହିଲା ବାଘ ଶିକାର କରି ଏକ ହରିଣ ଛୁଆ ଆଣି ମାଉସୀ ପାଖରେ ରଖିଥାଏ। ବାଘୁଣୀ ସଗଡା ଯାଇ ଗୁମ୍ଫାରେ ପହଞ୍ଚିଲା। ଦେଖିଲା ଘରର ଗୋଟିଏ କୋଣରେ ହରିଣ ଛୁଆଟିଏ ପଡ଼ିଛି। ବୁଢ଼ୀ ବାଘୁଣୀ କହିଲା ସଗଡା, ଆମ ଘରକୁ ଜଣେ ଯୁବକ ଆସିଛନ୍ତି ଦଣ୍ଡକାରଣ୍ୟରୁ। ସେଠାରେ ମୋର ଜଣେ ଭଉଣୀ ରହୁଛନ୍ତି। ଦେଖ ଉପହାର ସ୍ୱରୂପ ତୋ ପାଇଁ ଏହି ସୁଆଦିଆ ହରିଣ ଛୁଆଟିଏ ଆଣିଛନ୍ତି, ତୁ ଖାଇ ପିଇ ଆରାମରେ ଶୁଅ। ସେ ମୋ ପାଇଁ କିଛି ଆଣିବେ ଆମେ ଦୁହେଁ ଖାଇ ପିଇ ଶୋଇବୁ।

ବାଘୁଣୀ ସଗଡା ମନେ ମନେ ଭାବିଲା ତାହାହେଲେ ଏହି ଯୁବକ ବାଘଟି ତାଙ୍କର ହିଁ କୁଣିଆ। ଅକାରଣେ ସେ ତାକୁ ମାରି ପକାଇଲା। ମାଡ ଖାଇ ମଧ୍ୟ ସେ ତ ତାକୁ କିଛି କହିଲା ନାହିଁ।

ମାଉସୀ ଡାକ ପକାଇଲେ "ସଗ୍ଧତା ଶୁଣିଲୁ । ମୋର ଭଉଣୀର ପୁଅ ଆସିଛି । ତାର ନାମ କଶ୍ୟପ । କଶ୍ୟପକୁ ବସାଅ, କଞ୍ଚା ହରିଣ ମାଂସ ଖାଇବାକୁ ଦିଅ, ମୁଁ ଆସୁଛି । ଏହା କହି ବାଘୁଣୀ ମଉସୀ ସେ ସ୍ଥାନ ଛାଡି ଚାଲିଗଲା ।

ଯୁବକ ବାଘ କଶ୍ୟପ ଧୀରେ ଧୀରେ ଯାଇ ବସିଲା ଗୁମ୍ଫାର ଗୋଟିଏ କୋଣରେ । ମୁଣ୍ଡରୁ ସେପରି ରକ୍ତ ଝରୁଛି । ଆନନ୍ଦରେ ବାଘୁଣୀ ସଗ୍ଧତା ତାର ପାଖରେ ଯାଇ ବସିଲା । ତାହାର ମୁହଁକୁ ଦେଖି ହାଇ ମାରିଲା । ଲାଙ୍ଗୁଳ ପିଟିଲା ଦୁଇ ଥର, ତାର ଚାରିପଟେ ଘୁରି ବୁଲିଲା କିନ୍ତୁ କଶ୍ୟପ କିଛି ନ କହି ଚୁମ୍ପା ଚାମ୍ପ ରହିଲା । ତାର ଏପରି ବ୍ୟବହାର ଦେଖି ସଗ୍ଧତା ରାଗିଯାଇ କଶ୍ୟପର ଲାଙ୍ଗୁଳକୁ ଚୋବାଇ ଦେଲା । କଶ୍ୟପ କିଛି କହିଲାନି । ସେ ତଳେ ପଡ଼ି କିଛି ସମୟ ଛଟପଟ ହେଲା । ବାଘୁଣୀ ମାଉସୀ ଫେରି ଆସି ଧୀରେ ଧୀରେ ତାର କ୍ଷତ ସ୍ଥାନକୁ ଲେହିବାକୁ ଲାଗିଲା । କଶ୍ୟପ ଉଠି ବସିଲା । ସଗ୍ଧତକୁ ନ ଅନାଇ ଭୂନ ଚାନ ଆଖି ବୁଜି ଶୋଇବାକୁ ଚେଷ୍ଟା କଲା ।

ସେଦିନ ସଗ୍ଧତା ଅପମାନ ପାଇ ପାହାଡ଼ ଉପରକୁ ଚାଲିଗଲା । ଗୋଟିଏ ମହୁଲ ଗଛ ମୂଳରେ ଶୋଇ ଶୋଇ ଢୁଲେଇଲା । ଅନ୍ଧକାର ମାଡ଼ି ଆସିଲା । ମହୁଲ ଖାଇବା ଆଶାରେ ଦୁଇଟା ଭାଲୁ ସେଠାରେ ପହଞ୍ଚିଲେ । ସେଠାରେ ସଗ୍ଧତାକୁ ଦେଖି ରାଗିଯାଇ ଆକ୍ରମଣ କରିବାକୁ ମାଡି ଆସିଲେ । ଦୁଇଟା ଭାଲୁକୁ ଦୂର ପଟରୁ ଦେଖି ସଗ୍ଧତା ଭଡ଼ କଲା । କିନ୍ତୁ ହଠାତ୍ ଲୁଚିଥିବା ସ୍ଥାନରୁ କଶ୍ୟପ ଡେଇଁ ପଡି ଗୋଟାଏ ଭାଲୁର ଶଙ୍ଖନଳୀ ଧରି

ପକାଇଲା । ଭାଲୁଟି ପଡ଼ ରଡ଼ କରିବାକୁ ଲାଗିଲା । ଅନ୍ୟ ଭାଲୁଟି ଉପରକୁ ସରିତା ଡେଇଁ ପଡ଼ିଲା । ତାକୁ କ୍ଷତ ବିକ୍ଷତ କରି ପକାଇଲା । ଭାଲୁ ଦୁଇଟି ଡରି ପଳାଇଲେ । ସରିତା ଅନାଇଲା ବେଳକୁ ଯୁବକ ବାଘ କଶ୍ୟପ ସେହି ସ୍ଥାନ ଛାଡ଼ି ପଳାଇଛି ।

ଘରକୁ ଫେରିଲା ସୁନ୍ଦରୀ ସରିତା । ସେ ଆଜି ବୁଝି ପାରିଲା ପୁରୁଷ ବିନା ନାରୀର ଜୀବନ କେତେ ଅସହାୟ । ସେ ସବୁ କଥା ମାଉସୀକୁ କହିଲା । କିନ୍ତୁ ମାଉସୀ କହିଲେ "କଶ୍ୟପ ତ ତାର ଜାଗାକୁ ଫେରିଯାଇଛି । ତୁ ଯଦି ଚାହୁଁଛୁ ବର୍ତ୍ତମାନ ହିଁ ଆମେ ତାର ପଛେ ପଛେ ଦଣ୍ଡକାରଣ୍ୟ ଯିବା, ସରିତା ଖୁସିରେ ନାଚି ଉଠିଲା ।

ଅନେକ ଦିନ ପରେ ଲୋକେ ଗୋଟିଏ ବାଘୁଣୀ ପରିବାରକୁ ଦଣ୍ଡକାରଣ୍ୟରେ ଦେଖିବାକୁ ପାଇଲେ । ସେଥିରେ ଥିଲେ ସରିତା କଶ୍ୟପ ଓ ବୁଢୀ ବାଘୁଣୀ ଆଉ ଦୁଇଟି ବାଘ ଛୁଆ । ବାଘ ବାଘୁଣୀ ପ୍ରଣୟ ଉପରେ ଏତେ ମସ୍ତ ଥିଲେ ଯେ ସେମାନେ ଏହି ଲୋକ ମାନଙ୍କୁ ଦେଖି ପାରି ନ ଥିଲେ ।



# ମୟୂରୀ

ସେଦିନ ବରଗଛ ମୂଳକୁ ମୟୂର ଆସିବା ବେଳକୁ ସଞ୍ଜ ଗୋଟାଏ ହୋଇ ଯାଇଥାଏ । ଅଳ୍ପ ଡେରିରେ ପହଞ୍ଚିଲା ମୟୂରୀ । ତାର ମନରେ ଆନନ୍ଦ । ସେ ଆଜି ଗୋଟିଏ ବଡ଼ କାମ [illegible] ପାଉଛି ସେ ନିଜ ଆସନରେ ବସି କାହାଣୀ କହିବାକୁ ଆରମ୍ଭ କ[illegible]

ଅନେକ ଦିନ ତଳର କଥା । ମୁଁ ଧୀରେ ଧୀରେ ଚାଲିଚାଲି ଉଡ଼ି ଉଡ଼ି ଚାଲି ଗଲି ଅନେକ ଦୂର । ଆକାଶ ମେଘାଚ୍ଛନ୍ନ ହୋଇ ଯାଉଛି । ମୁଁ ଆନନ୍ଦରେ ନାଚି ଉଠିଲି । ମୋର ଏହି ନାଚ ଦେଖି ଗୋଟାଏ ମୟୂରୀ ନାଚି ନାଚି ଚାଲି ଥିଲା । ଆମେ ଧୀରେ ଧୀରେ ନାଚି ନାଚି ଯାଇ ପହଞ୍ଚିଲୁ ଏକ ସୁନ୍ଦର ସ୍ଥାନରେ । ଚାରିଆଡ଼େ ଅନେକ ବୃକ୍ଷ ଶୋଭା ପାଉଛି । ଆମ୍ବ ଗଛରେ ଆମ୍ବ ଗୁଡ଼ିକ ପାଚି ଝୁଲି ଝୁଲି ହୋଇ ରହିଛି । ସେଠାରେ ଅଛି ଅନେକ ନଡ଼ିଆ ଗଛ । ନଡ଼ିଆ ଗଛରୁ ନଡ଼ିଆ କେହି ହେଲେ ତୋଳୁ ନାହାନ୍ତି । ସେହି ସ୍ଥାନରେ ଅନେକ ପଣସ ଓ ସାପୁଟା ଗଛ ମଧ୍ୟ ଅଛି । ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇ ରହିଗଲି । ମଣିଷ ଆଜିଠୁ ଖାଦ୍ୟ ନ ପାଇ ମୁଣ୍ଡରେ ହାତ ଦେଇ ବସିଛି । ସେ କିପରି ବା ଏପରି ଏକ ତୋଟାରେ ଫଳଥିବା ଏତେ ଗୁଡ଼ାକ ଫଳ ନ ନେଇ ଭୁଲି ରହିଛି । ତାହାହେଲେ ସେଠାରେ ଏପରି କୌଣସି ଏକ ଜୀବ ଅଛି ଯିଏକି ମଣିଷକୁ ଏହି ସ୍ଥାନକୁ ଆସିବା ପଥରେ ପ୍ରତିରୋଧ କରୁଛି ।

ମୁଁ ନାଚି ନାଚି ବୁଲୁଥାଏ । ପ୍ରେମର ଆବେଗରେ ମୋର ପଛେ ପଛେ ବୁଲୁଥିବା ମୟୂରୀମାନେ ବି ନାଚନ୍ତି । ହଠାତ୍ ଏକ ଘୋର ଗର୍ଜନରେ ମୁଁ ଭୟଭୀତ ହୋଇ ଉଠିଲି । ପଛକୁ ବୁଲି ଦେଖିଲି ଭୟଙ୍କର ବାଘ ଦୁଇ ଚାଲି ଚାଲି ଆସୁଛନ୍ତି । ଗୋଟିଏ ବାଘ ଅନ୍ୟ ବାଘୁଣିକୁ କହୁଛି "ପ୍ରିୟେ ! ଏହି ଅଞ୍ଚଳରେ ଆମେ ସୁଖରେ ରହି ଆସିଛେ । ଦେଖ ଆମର ଭୟରେ ଏହି ଅଞ୍ଚଳରେ କୌଣସି ମଣିଷ ଏଠାକୁ ଆସିବାକୁ ସାହସ କରୁନାହାନ୍ତି । ଗଛରୁ ଯେଉଁ ଫାଳ ଆମ୍ବ ଆଉ ସପେଟା ଝଡ଼ି ପଡ଼ୁଛି ତାକୁ ଖାଇ ଏବଂ ଏହି ବନରେ ଜଳ ପିଇ ଆମେ ଆରାମରେ ରହୁଛେ । କିନ୍ତୁ ଆମର ଗୋଟାଏ ଦୁଃଖ । ପୁଅ ଝିଅ ଆମର କେହି ନାହିଁ ।"

ମାଈ ବାଘୁଣି କହିଲା "ପ୍ରିୟତମ ! ଏଠାରେ ଦୂରରେ ଏକ ଶିବ ମନ୍ଦିର ଅଛି । ସେଠାକୁ ଯାଇ ଆମେ ଆମର ଦୁଃଖ କହିବା । ଏହିଠାରେ ଗାଁ ଲୋକମାନେ କଥା ହେଉଛନ୍ତି ଯେ ଆମେ ଦୁହେଁ ରାତିରେ ଯାଇ ଶିବଙ୍କ ନିକଟରେ ପ୍ରାର୍ଥନା କଲେ ଆମର ସନ୍ତାନ ହେବ ।"

ମୁଁ ଏମାନଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ଚକିତ ରହିଗଲି । ମୋର ନାଚ ଆପେ ଆପେ ବନ୍ଦ ହୋଇଗଲା । ମୁଁ ରାତି ହେବାରୁ ଶିବ ମନ୍ଦିର ଭିତରେ ଥିବା ଏକ ଚମ୍ପା ଗଛ ଡାଳରେ ବସିରହିଲି । ଅଧରାତି ସମୟକୁ ଏକ ଶବ୍ଦ ଶୁଭାଗଲା । ମୁଁ ଗଛରେ ଥାଇ ଦେଖେ ବାଘ ଦୁଇଟି ଧୀରେ ଧୀରେ ମନ୍ଦିର ମଧ୍ୟକୁ ପ୍ରବେଶ କରୁଛନ୍ତି । ତା ହେଲେ ଏମାନେ ସନ୍ତାନ ଉଦ୍ଦେଶ୍ୟରେ ଏଠାରେ ଆସି ପହଞ୍ଚିଲେ ।

ଏପରି ପ୍ରତିଦିନ ସେମାନେ ଚିବଙ୍କ ଦର୍ଶନ କରିବାକୁ ଆସନ୍ତି । ଏପରି ଅନେକ ଦିନ କଟିଯାଏ । ଥରେ ଅଧେ କେହି କେହି ଏହି ଭାଲୁକୁ ଦେଖିଥାନ୍ତି । କିନ୍ତୁ କେହି ସେମାନଙ୍କୁ ମାରିବାକୁ ଇଚ୍ଛା କରନ୍ତି ନାହିଁ ।

ଦିନକର କଥା । କେତେକ ପରର ଗୋଠାଳ ପରର ଗୋଠାଇବାକୁ ଯାଇ ଏହି ଅମ୍ଭ ଚୋଠାରେ ପହଞ୍ଚିଲେ । ସେମାନେ ଯାଇ ଫିଦହଞ୍ଚନ୍ତି ଗାଁରେ । ଚୋଠାରେ ଭାଲୁ ଥିବାର କଥା ଗାଁଆ ଲୋକଙ୍କୁ କହନ୍ତି । କେତେଜଣ ଯୁବକ ଟେଣ୍ଟା ବାଡ଼ି ଧରି ଭାଲୁଙ୍କୁ ମାରିବାକୁ ଚେଷ୍ଟା କରନ୍ତି । କିନ୍ତୁ ସେମାନେ ଆସିବାର ଦେଖି ଅଣ୍ଡିରା ଭାଲୁଟି କହେ "ତୁମେ ଚାଲିଯାଅ । ତୁମେ ଗର୍ଭବତୀ । ମୁଁ ଏମାନଙ୍କୁ ଅଟକାଇ ରଖୁଛି । ମାଈ ଭାଲୁ ବା କଣ କରନ୍ତା ? ସେ ସ୍ୱାମୀଙ୍କ କଥା ମାନି ଚାଲିଗଲା ସିନା ତାର ମନ ମାନିଲା ନାହିଁ । ସେ ଧୀରେ ଧୀରେ ଚାଲିପଡ଼ି ଏହି ଲୋକମାନଙ୍କ ପଛରେ ଚାଲିବାକୁ ଲାଗିଲା । ଲୋକମାନେ ଯେତେବେଳେ ତାର ସ୍ୱାମୀଙ୍କୁ ଆକ୍ରମଣ କଲେ ସେ ଦୁଇ ଦ୍ୱାରଠାକୁ ଫାଣ୍ଡି ଆ ଖାବରା କଲା । ଅଣ୍ଡିରା ଭାଲୁଟି କିନ୍ତୁ କାହାକୁ ଆକ୍ରମଣ କଲାନାହିଁ । ଚୁପ୍ ଚାପ ନିର୍ମ୍ମଗଧ ଭଳି ନିଜ ସ୍ତ୍ରୀର ମାହସିକତା ଦେଖିବାକୁ ଲାଗିଥିଲା ।

ଶେଷରେ ଲୋକମାନେ ସେହି ସ୍ଥାନ ଛାଡ଼ି ଚାଲିଯାନ୍ତି । ମାଈ ଭାଲୁ ପାଖିଁ ଆସି ପ୍ରିୟତମର ହାତଧରି ଟାଣିନେଇ କହେ ପ୍ରିୟତମ ! ଏହି ମଣିଷ ଜାତି ହାର ମାନିବାର ଜାଣନ୍ତି ନାହିଁ । ଏମାନେ ପୁଣି ଆସିବେ । ଆଉ ଅନେକ ସଙ୍ଗ ସାଥି ଆଉ ବନ୍ଧୁକ ଧରି । ଚାଲ ଏହି ସ୍ଥାନ ଛାଡ଼ି ପଳାଇବା ।" ଦୁହେଁ ସେହି ସ୍ଥାନ ଛାଡ଼ି ପଳାଇ ଗଲେ ।

ଅନେକ ଦିନ ବିତିଗଲାଣି । ଦିନେ ସେମାନେ ଗ୍ରାମର ଦଳେ ଲୋକ ଏହି ଭାଲୁ ସହ ଆଉ ଦୁଇଟି ଛୁଆଙ୍କୁ ମହୁସ୍ଥ କାଳୁଆ ଯିବା ବାଟରେ ଦେଖନ୍ତି । ଏମାନଙ୍କୁ ଦେଖି ମାତ୍ର ଭାଲୁଟି ନିଜର ସ୍ୱାମୀ ଆଉ ଛୁଆମାନଙ୍କୁ ଆଗରେ ଚଠାଇ ଦେଇ ପଛେ ପଛେ ଚାଲୁଥିଲା, ଯେପରିକି ତା'ର ସ୍ୱାମୀ ଆଉ ଛୁଆଙ୍କ ଜୀବନ ରକ୍ଷା ସକାଶେ ସେ ପ୍ରାଣ ଦେବାକୁ ତତ୍ପର ।

❋ X ❋

# କପଟୀ ଶାଗୁଣା

ଆଜିର ଗଦିରେ ସମସ୍ତ ପକ୍ଷୀ ଆସି ବର ଗଛରେ ନିଜର ସ୍ଥାନରେ ବସିଥାନ୍ତି । ଆଜିର କାହାଣୀ ଆରମ୍ଭ କରନ୍ତି ଗୋଟିଏ ବଣିଚଢ଼େଇ । ସେ କହନ୍ତି "ମୁଁ ସଦାସର୍ବଦା ଏହି ସ୍ଥାନ ଛାଡ଼ି ଖାଦ୍ୟ ଅନ୍ୱେଷଣରେ ବୁଲି ଚାଲେ । ଦିନେ ବୁଲି ବୁଲି ଯାଇ ପହଞ୍ଚିଲି ବାଇପାସର ଶଙ୍ଖ ନିକଟେ । ଏହା ନରେନ୍ଦ୍ରପୁର ଜଙ୍କସନରୁ ଆରମ୍ଭ ହୋଇ ହଳଦିଆପଦର ଜଙ୍କସନ ପର୍ଯ୍ୟନ୍ତ ମାଡ଼ି ଚାଲିଛି । ଦୁଇପାଖରେ ସଦାସର୍ବଦା ଜିନିଷ ପତ୍ର ବୋଝେଇ ଟ୍ରକ ଚାଲିଥାଏ । ଏହି ରାସ୍ତାରେ ଗୋଟାଏ ଜାଗାରେ ଏକ ବିରାଟ ଶଙ୍ଖ ଅଛି । ଶଙ୍ଖର ଦୁଇପାଖରେ ଗ୍ରୀଷ୍ମଋତୁରେ ମଧ୍ୟ କିଛି ପାଣି ଜମି ରହେ । ସେହିଠାରେ ଅନେକ ଗାଈ ଗୋରୁ, ଛେଳି ମେଣ୍ଢା ପାଣି ପିଅନ୍ତି । ଶ୍ରେଷ୍ଠ ଶ୍ରେଷ୍ଠ ପକ୍ଷୀମାନେ ପହଁରନ୍ତି । ରାସ୍ତାର ଦୁଇପଟରେ ଲଗାଯାଇଥିବା ଶାଳଗଛ ଗୁଡ଼ିକ ଲମ୍ବା ଓ ମୋଟା ହୋଇଥିବାରୁ ଏହି ସ୍ଥାନରେ ଥଣ୍ଡା ଓ ଆରାମ ଦାୟକ ପ୍ରସ୍ତୁତ ହୁଏ । ମୁଁ ଆଜି

ତଳେ ଚଡ଼େଇଙ୍କୁ ଧରି ଏହି ମନୋରମ ସ୍ଥାନର ସୁନ୍ଦର ଦୃଶ୍ୟ ଉପଭୋଗ କରୁଥାଏ ।

ଏହା ଏକ ଖୋଲା ଜାଗା ହୋଇଥିବାରୁ ପବନ ଧୀର ବେଗରେ ବହି ମନରେ ଅପୂର୍ବ ଆନନ୍ଦ ସଞ୍ଚାର କରୁଥାଏ । ଏହି ସୁନ୍ଦର ସ୍ଥାନରେ ମୁଁ ବସି ବସି ଲକ୍ଷ୍ୟ କରେ ନଦୀଟିର ଶ୍ରେଷ୍ଠ ଜଳ ପ୍ରବାହଟିକୁ । ସେହି ଜଳରେ ଅନେକ ମାଛ ଏପାରି ସେପାରି ହେଉଛନ୍ତି । ଅନେକ ମାଛରଙ୍କା ମାଛ ଖାଇବା ଆଶାରେ ଆକାଶରେ ଚକ୍ରାକାରରେ ଉଡ଼ି ବୁଲୁଛନ୍ତି ।।

ସେହିସ୍ଥାନରେ ଏକ କୁଆ ଦମ୍ପତି ବାସ କରନ୍ତି । ସେହି ଶ୍ରେଷ୍ଠ ନଦୀଟିକୁ ଲାଗି ଦୁଇ ଗୋଟି ଆମ୍ବଗଛ ଅଛି । ସେହି ସ୍ଥାନରେ ସେମାନେ ବାସ କରୁଅଛନ୍ତି । ସେମାନଙ୍କର ଅନେକଗୁଡ଼ିଏ ଛୁଆ ସେହି ବୃକ୍ଷମାନଙ୍କରେ ହୋଇ ଆସୁଛନ୍ତି । ସେହି ଦୁଇ ଗୋଟି ଆମ୍ବ ବୃକ୍ଷରେ ହିଁ କୁଆ ଦମ୍ପତି ନିଜର ଛୁଆ ପିଲଙ୍କୁ ଧରି ରହି ଆସୁଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସେହି ପରିବାରର ସୁଖ ଶାନ୍ତି ଦେଖି ଥରେ ଶାଗୁଣା ଚିନ୍ତା କଲା ଏମାନଙ୍କୁ କପଟ ହେଲେ ଏହି ସ୍ଥାନରୁ ବାହାର କରି ନିଜେ ରହିବା । ଶାଗୁଣା ଦଳର ଦଳପତି ପ୍ରଥମେ ଯାଇ ଆମ୍ବ ବୃକ୍ଷର ସର୍ବୋଚ୍ଚ ଡାଳରେ ବସିପଡ଼ିଲା । ସେହି ସ୍ଥାନରେ ଥିବା କୁଆଟି ଯାଇ ଶାଗୁଣାକୁ କହିଲା, "ତୁମେ ତ ପଶୁ ପକ୍ଷୀ ମୃତ କମ୍ବା ଜୀବିତାବସ୍ଥାରେ ଭକ୍ଷଣ କରି ଜୀବିକା ନିର୍ବାହ କରୁଛ । ଆମର ଏଠାରେ ଅନେକ ଗୁଡ଼ିଏ ଶ୍ରେଷ୍ଠ ଶ୍ରେଷ୍ଠ ଛୁଆ ଅଛନ୍ତି । ତୁମେ ଏହିଠାରେ ଥିବା ଅଣ୍ଡା ଏବଂ ପକ୍ଷୀମାନଙ୍କୁ ଖାଇ ପକାଇବ !" ଏହା ଶୁଣି ଶାଗୁଣାଟି କହିଲେ "ମୁଁ ଅନ୍ଧ ହୋଇଯାଇଛି । ମୋର

ଆଖିକୁ ବିଶ୍ୱାସ କରେ ନାହିଁ । ତେଣୁ ଏହି ବୃକ୍ଷରେ ମୁଁ ଆଶ୍ରୟ ନେଇଛି । ତୁମେମାନେ ମୋତେ ସାହାଯ୍ୟ କରିବ । ତୁମର ଖାଦ୍ୟରୁ କିଛି କିଛି ନଦେଲେ ମୁଁ ଏହିଠାରେ ବସି ଖାଆନ୍ତି ।" ଏହା ଶୁଣି କୁଆ ଦମ୍ପତି କିଛି ସମୟ ଆଶ୍ଚର୍ଯ୍ୟ ଚକିତ ହୋଇ ରହିଯାନ୍ତି । ମାଈ କୁଆଟି ଧୀରେ ଧୀରେ କହେ "ପ୍ରିୟତମ ! ଏହି ଶାଗୁଣାର ମନରେ କିଛି ଛଳ ଥିବା ଭଳି ଜଣାପଡ଼ୁଛି । ମୁଁ ଆମ୍ବଡାଳରେ ରହି ଏହି ଶାଗୁଣାର ମନରେ ଥିବା ଛଳ କପଟ ବୁଦ୍ଧି ଜାଣିବାକୁ ଚେଷ୍ଟା କରିବ । ଆପଣ ଅନ୍ୟ ଏକ ଗଛରେ ଲୁଚି ବସନ୍ତୁ ।

ମାଈ କୁଆ ଆମ୍ବଡାଳରେ ଲୁଚି ବସେ । ଅଳ୍ପ କେତେକ ସମୟ ପରେ ଅନ୍ୟ ଏକ ଶାଗୁଣା ଆସି ଦଳପତିଙ୍କୁ କୁହେ "ଆମର ସମସ୍ତ ଶାଗୁଣା ବାହିନୀ ଆଜି ଅଳ୍ପ ସମୟ ପରେ କୁଆ ଛୁଆମାନଙ୍କ ଉପରେ ଝାମ୍ପି ଆସିବେ । ଅନେକଙ୍କୁ ଫୋପାଡ଼ି ଦେବେ, କେତେକଙ୍କୁ ଖାଇଯିବେ ।

କୁଆ ଏହା ଶୁଣିବା ପରେ ତା'ର ଛୁଆମାନଙ୍କୁ ଯାଇ କହେ ତୁମେ ସମସ୍ତେ ଯାଇ ଶାଳଗଛରେ ଲୁଚିଯାଅ, ମୁଁ ମଧ୍ୟ ତୁମ ବାପାଙ୍କ ସହ ଯାଇ ସେଠାରେ ଲୁଚି ରହିବି ।" କୁଆ ଛୋଟ ଛୋଟ ଶିଶୁଙ୍କୁ ନେଇ ଶାଳ ଗଛରେ ଲୁଚାଇ ଦିଏ ଏବଂ ସ୍ୱାମୀଙ୍କ ସହ ସେହି ସ୍ଥାନ ତ୍ୟାଗ କରେ ।

ଶାଗୁଣାଦଳ ଆସନ୍ତି କିନ୍ତୁ କୁଆଛୁଆଙ୍କୁ ନ ଦେଖି ଆଶ୍ଚର୍ଯ୍ୟ ଚକିତ ହୋଇଯାନ୍ତି । ଏମିତି କେତେ ଦିନ ପରେ କୁଆ ବୁଢା ଶାଗୁଣାକୁ ଦେଖି କହେ "ନମସ୍କାର ଦଳପତି, ଏଠାରୁ ଦଶକୋଶ

ବୂରରେ ଏକ ଦୁର୍ଭିକ୍ଷ ପଡ଼ିଛି । ଅନେକ ଲୋକ ମାଣ୍ଡ ମରୁଛନ୍ତି । ଭୁମେ ଭୁମର ସେନା ଦଳ ଧରି ସେଠାକୁ ଗ୍ଲଲଗଲେ ଭଲ ହୁଅନ୍ତା । କୁଆ କହିବା କଥା ଶଗୁଣା ତାର ଦଳକୁ କୁହେ । ସମସ୍ତଙ୍କୁ ଏହି କଥା ଭଲ ଲଗେ । କୁଆ ପକାକୁ ଉଡ଼ି ଏହି ସ୍ଥାନକୁ ଆସି ଦେଖେ ସବୁଗୁଡ଼ାକ ଶାଗୁଣା ସେହି ସ୍ଥାନ ଛାଡ଼ି ଚ୍ଲଲ ଯାଇଛନ୍ତି ।

---

# ବାସନ୍ତୀ

ଗଛ ଡ଼ିର ନସ୍ତବ୍ଧତ ମଧ୍ୟରେ ପକ୍ଷୀମାନେ ଆସି ବରଗଛ ଉପରେ ବସିବାକୁ ଲଗନ୍ତି । ଆଜିର କାହାଣୀ କହି ଗ୍ଲଲେ ଏକ ସୁନ୍ଦର କପୋତ । ତାର ସୁନ୍ଦର ଗପ ଆଉ ମଧୁର କଥା ଶୁଣି ସମସ୍ତେ ତାକୁ ଏକ ଲୟରେ ଅନାଇ ରହନ୍ତି । ସେ ଧୀରେ ଧୀରେ କହେ "ବସନ୍ତପୁର ନାମକ ଏକ ଗ୍ରାମ । ମଧୁର ପ୍ରକୃତିର କୋଣରେ ଏହି ଗ୍ରାମଟି ପୁରି ଉଠୁଛି । ପାଖରେ ବହିଯାଉଛି ଏକ ସୁନ୍ଦର ଝରଣା । ଏହି ଝରଣାର ଜଳ କେବେ ଶୁଖେ ନାହିଁ । ଏହି ଝରଣା ତଳେ ସବୁଆଡ଼େ ବସନ୍ତ ସାହୁଙ୍କ ଅନେକ ଜମି ଅଛି । ଝରଣାର ଜଳ ଏହି ଜମିରେ ମାଡ଼ିବା ଫଳରେ ଧାନ, ମରିଚ ପ୍ରଭୃତି ଉତ୍ପନ୍ନ ହୁଏ । ଭଲ ଦୃଶ୍ୟରେ ଅନେକ ନଡ଼ିଆଗଛ । ଗ୍ଲରିଆଡ଼େ ଗଛହିଁ ଗଛ, ବସନ୍ତବାବୁ ରୋପଣ କରିଛନ୍ତି । ଏହି ବଗିଚା ଅଞ୍ଚଳର ଗ୍ଲରିପଟେ ଅନେକ ବୃକ୍ଷଦ୍ୱାରା ପରିବେଷ୍ଟିତ ହୋଇଅଛି । ଏହି ଝରଣାର ନିକଟରେ ଏକ ବଗିଚା ପୁଷ୍କରିଣୀ । ଏହାର ଅଳ୍ପ ଦୂରରେ ବସନ୍ତବାବୁଙ୍କ ଘର । କମ୍ ବୟସରୁ ତାଙ୍କର ମାଆ ମୃତ୍ୟୁବରଣ

କରିଥାନ୍ତି । ତାଙ୍କ ପିତାଙ୍କର ଅନେକ ସମ୍ପତ୍ତି । ତାଙ୍କୁ ଯେତେବେଳେ ଯୁବକ ବୟସ ତାଙ୍କ ପିତା ମୃତ୍ୟୁ ବରଣ କଲେ । ସେ ଗ୍ରାମମୂ ହାଇସ୍କୁଲରୁ ମେଟ୍ରିକ୍ୟୁଲେସନ ପରୀକ୍ଷାରେ ପାସ କରି ଜମିବାଡ଼ି କାମରେ ବ୍ୟସ୍ତ ହୁଅନ୍ତି । ବୟସ ବଢ଼ି ଚାଲେ । ସେତେବେଳେ ତାଙ୍କୁ ଚବିଶି ବର୍ଷ ବୟସ ତାଙ୍କର ବନ୍ଧୁ ବାନ୍ଧବ ତାଙ୍କ ସକାଶେ ଅନେକ ପ୍ରସ୍ତାବ ଆଣିଥାନ୍ତି । ସେମାନଙ୍କ ମଧ୍ୟରୁ ବୃଦ୍ଧ ପଟେଞାଟି ପ୍ରସ୍ତାବ ତାଙ୍କୁ ଭଲ ଲାଗେ ।

ସେ ସେମାନଙ୍କଠାରୁ ସମସ୍ତଙ୍କର ଠିକଣା ସଂଗ୍ରହ କରନ୍ତି । ତାଙ୍କ ଗ୍ରାମଠାରୁ ଦୁଇମାଇଲ ଗ୍ରାମରେ ତାଙ୍କର ବାପାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ରହୁଥାନ୍ତି । ସେମାନେ ଅତ୍ୟନ୍ତ ଧନୀ ଥିଲେ କିନ୍ତୁ ବର୍ତ୍ତମାନ ଗରିବ ହୋଇ ଯାଇଛନ୍ତି । ବାପାଙ୍କର ସେହି ବନ୍ଧୁଙ୍କର ଅସୁସ୍ଥତାର ଖବର ତାଙ୍କ ପାଖରେ ଆସି ପହଞ୍ଚେ । ସେଦିନ ସେ ନିଜର ମଟରସାଇକେଲଟି ବାହାର କରି ସେହି ଗାଁ ନିକଟରେ ଯାଇ ପହଞ୍ଚନ୍ତି । ସେଇ ଗାଁର ପ୍ରାଇମେରୀ ସ୍କୁଲ ଶିକ୍ଷକ ହେଉଛନ୍ତି ବସନ୍ତର ଅନ୍ତରଙ୍ଗ ବନ୍ଧୁ ପ୍ରକାଶ । ପ୍ରାଇମେରୀ ସ୍କୁଲ ବାରଣ୍ଡାରେ ମଟରସାଇକେଲଟି ରଖିଦେଇ ପାଦରେ ଚାଲି ଚାଲି ଯାଇ ପହଞ୍ଚନ୍ତି ତାଙ୍କ ପିତାଙ୍କ ବନ୍ଧୁ ଘରେ ।

ବାସନ୍ତୀ ତାରି ନବନିର୍ମିତ କନ୍ତୁ ଧରି ସକାଳୁ ସକାଳୁ ଦଣ୍ଡରେ ଲଗାଯାଇଥିବା ମଲ୍ଲିମାନଙ୍କ ରଜନୀଗନ୍ଧା ମଲ୍ଲୀ ଆଉ ବିଭିନ୍ନ ବର୍ଣ୍ଣର ଗୋଲାପ ଗଛରେ ପାଣି ପକାଇବାରେ ବ୍ୟସ୍ତଥାଏ । ତାରି କମଣ୍ଡଳୁ ହସ୍ତରେ ସେ ହାଣ୍ଡିରୁ ପାଣି ତାଳି ମନ୍ଦାକରି ଗଛରେ ଥିବା ଶୁଖିଲା ପତ୍ର ଗୁଡ଼ିକୁ ବାହାର କରି ଦେଉଥାଏ । ଏପରି ସେ ବୃକ୍ଷମାନଙ୍କର ସେବା କରି କରି ଯେଉଁ ସମୟରେ ହାଲିଆ ହୋଇଯାଏ ସେହି

ସମସ୍ତରେ ଏକ ବଡ଼ଷ ପଣସ ଗଛର ଗୁଳରେ ବସିପଡ଼େ । ସେହି ପଣସ ଗଛର ପାଖାପାଖି ଅନେକ ସାପଟା ଗଛ ଆମ୍ବଗଛମାନ ଧାଡ଼ ଧାଡ଼ ହୋଇ ଦଣ୍ଡାୟମାନ ହୋଇଥାନ୍ତି । ପାଖରେ ଥାଏ ଏକ ପାଣିଭର ପିତ୍ତଳ ମାଠିଆ ।

ବସନ୍ତବାବୁ ଧୀରେ ଧୀରେ ପ୍ରବେଶ କରନ୍ତି ଗୃହର ଆଗରେ ଥିବା ବଗିଚାରେ । ସୌନ୍ଦର୍ଯ୍ୟଯୁକ୍ତ ଏହି ବଗିଚାରେ ଏକ ଅପୂର୍ବ ରୂପସୀ କୁମାରୀ, ଚଳ ଚଞ୍ଚଳା କୁମାରୀକୁ ଦେଖି ସେ ଅଳ୍ପ କ୍ଷଣ ସକାଶେ ହତବାକ୍ ହୋଇଯାଆନ୍ତି ।

ତାଙ୍କର ଆଖପାଖରେ ଏପରି ସୁନ୍ଦର ପ୍ରକୃତିକୁ ଭଲ ପାଇବା ଝିଅ ଅଛନ୍ତି ବୋଲି ସେ ଭାବି ନାହାନ୍ତି । ସେ ବସନ୍ତୀ ନିକଟକୁ ଯାଇ ନମସ୍କାର କରି କହନ୍ତି ମୁଁ ହେଉଛି ଏଠାର ସ୍କୁଲ ଶିକ୍ଷକ ପ୍ରକାଶର ସାଙ୍ଗ । ଅନେକ ଦିନ ହେଲାଣି ତାଙ୍କୁ ଦେଖି ନଥିଲି, ତେଣୁ ଆସିଗଲି । ବାପା ଜୀବିତ ଥିବା ସମୟରେ ସେ ସର୍ବଦା ଆପଣଙ୍କ ବାପାଙ୍କ କଥା କହନ୍ତି । ତେଣୁ ଏଠାକୁ ଆସିଛି । ମୁଁ ତାଙ୍କୁ ଦର୍ଶନକରି ଯିବାକୁ ଇଚ୍ଛା ପ୍ରକାଶ କରୁଛି । ଆପଣ ଦୟାପୂର୍ବକ ମୋର ଆସିବା ଖବର ତାଙ୍କୁ କହିଦେବେ ।

ବାସନ୍ତୀ ପ୍ରତିନମସ୍କାର ଜଣାଇ ବସିବାକୁ କହେ । ଅଳ୍ପ ସମୟ ପରେ ପ୍ରଶାନ୍ତବାବୁ ଆସି ପହଞ୍ଚନ୍ତି । ସେତେବେଳେ ସେ ଦେଖନ୍ତି ତାଙ୍କର ପ୍ରିୟ ବନ୍ଧୁଙ୍କ ପୁଅ ବସନ୍ତ ଆସିଛି, ତାଙ୍କ ଗୋଡ଼ ତଳକୁ ପଡ଼େ ନାହିଁ । ସେ ନୌକରଙ୍କୁ ଡାକ ମାଛ ଧରି ଆଣିବାକୁ କହନ୍ତି । ଗୁଡ଼ା ଆଣିବାକୁ ବାସନ୍ତୀଙ୍କୁ କହନ୍ତି । ଗୁଡ଼ା ଆସେ । ଦୁହେଁ ଗୁଡ଼ା ଖାଇବା ସମୟରେ ସେ କହନ୍ତି ।

"ମୃତ ପାଞ୍ଚ ବର୍ଷ ଏ ଅଞ୍ଚଳରେ ମରୁଡ଼ି ପଡ଼ିବା ଯୋଗୁ ଆମେ ଗରିବ ହୋଇପଡ଼ିଲୁ । ଅନେକ ଗୁଡ଼ାଏ ଟଙ୍କା କରଜକରି ପକାଇଛୁ । ବାସନ୍ତୀ ମୋର ଏକ ମାତ୍ର କନ୍ୟା । ତାର ବୟସ ଅଠର ହେଲାଣି । ତାଙ୍କୁ କୌଣସି ସତ୍ପାତ୍ରରେ ଦାନ କଲେ ମୁଁ ଆନନ୍ଦ ହୁଅନ୍ତି ।"

ଏହା ଶୁଣି ହସି ହସି ବସନ୍ତ କହନ୍ତି "ପିତାଙ୍କ ମୃତ୍ୟୁ ସମୟରେ ସେ କହିଥିଲେ 'ମୋର ମୃତ୍ୟୁର ଏକ ବର୍ଷ ପରେ ତୁମେ ଯାଇ ମୋର ବନ୍ଧୁଙ୍କ ଗୃହରେ ପହଞ୍ଚିବ । ମୁଁ ଅଳ୍ପ କମ୍ ବୟସରେ ତୋର ବିବାହ ମୋ ବନ୍ଧୁଙ୍କ କନ୍ୟା ବାସନ୍ତୀ ସହ କରିଦେବି ବୋଲି ସ୍ଥିର କରିଥିଲି । ଏହା ମୋର ବନ୍ଧୁଙ୍କ କହିବି କହିବ ବୋଲି କହିପାରି ନଥିଲି । ସେ ଯଦି ମନା କରିବେ ତାହା ହେଲେ ତୁମେ ଅନ୍ୟ ଠାରେ ବିବାହ କରିବ ।" ବାପାଙ୍କର ମୃତ୍ୟୁର ଏକ ବର୍ଷ ବିତିଯାଇଛି । ମୁଁ ଆପଣଙ୍କ ନିକଟରେ ପହଞ୍ଚିଲି ।"

ବାସନ୍ତୀର ପିତାଙ୍କ ନୟନରୁ ଆନନ୍ଦାଶ୍ରୁ ବହିଯାଏ । ସେ ବସନ୍ତକୁ କୋଳ କରି ଧରି ନିଅନ୍ତି ।

ଯଥା ସମୟରେ ଦୁହିଁଙ୍କର ବିବାହ ହୁଏ । ପବିତ୍ର ମନ ବ୍ୟକ୍ତିର କଥା ରଖିବାକୁ ବି ଭଗବାନ ହୁଏ, ଏହା ଦେଖି ମୁଁ ଅବାକ ହୋଇଯାଇଛି ।



# ମଣିଷର ବି ହୃଦୟ ଅଛି

ଗଛର ଗଣ୍ଡିରେ ପକ୍ଷୀମାନଙ୍କୁ କାହାଣୀ ଶୁଣାଇବାକୁ ଯାଇ ଶାଗୁ କହିବାକୁ ଲଗିଲା- "ମୁଁ ଏଠାରୁ ଅନେକ ଦୂରରେ ମହ୍ନସା କାଳୁଆ ନିକଟସ୍ଥ ଏକ ଅରଣ୍ୟରେ ବାସ କରୁଥାଏ । ତାହା ଏକ ସୁନ୍ଦର-ଅରଣ୍ୟଥିଲା । ନାନା ପ୍ରକାର ବୃକ୍ଷରେ ସେହି ସ୍ଥାନ ପୂର ରହିଥାଏ । ଶାଗୁଆ ଗଛର ଶୋଭା ସହ ବୃକ୍ଷମାନଙ୍କର ଛାୟା ସମସ୍ତ ପଶୁ ପକ୍ଷୀଙ୍କୁ ଏଠାରେ ରହିବାକୁ ଆକର୍ଷଣ କରିଥାଏ । ଏଠାରେ ଥିବା ସରୋବରର ମଧୁର ଜଳ ପଶୁ ପକ୍ଷୀଙ୍କୁ ଆପ୍ୟାୟିତ କରିଥାଏ । ଏହା କୂଳରେ ଗୋଟିଏ ବୃକ୍ଷରେ ଗୋଟିଏ ଶୁଆ ଶାରୀ ବାସ କରୁଥାନ୍ତି । ସେମାନେ ପରସ୍ପର ପରସ୍ପରକୁ ଅତି ଭଲ ପାଉ ଥାନ୍ତି । ଜଣେ ଅନ୍ୟ ଜଣକୁ ଅଳ୍ପ ସମୟ ସକାଶେ ନ ଦେଖି ପାଗଳ ହୋଇ ଯାଆନ୍ତି ।

ସେହି ସୁନ୍ଦର ସ୍ଥାନର ମନୋରମ ଦୃଶ୍ୟ ଅନେକ ପ୍ରକୃତି ପ୍ରେମୀଙ୍କୁ ସେହି ସ୍ଥାନ ପରିଦର୍ଶନ ସକାଶେ ଆକର୍ଷଣ କରିଥାଏ । ତା ସଙ୍ଗେ ସଙ୍ଗେ ଦେବୀ ମହ୍ନସା କାଳୁଆଙ୍କ ପୂଜା ଅର୍ଚ୍ଚନା କରିବା ସଙ୍ଗେ ସଙ୍ଗେ ଦର୍ଶକମାନେ ବଣଭୋଜି କରି ଖାଇବାର ଆନନ୍ଦ ଅନୁଭବ କରିଥାନ୍ତି । ତେଣୁ ଏହି ଅଞ୍ଚଳରେ ଦିନରେ ପ୍ରାୟ ଗହଳ ଚହଳରେ ପୂର୍ଣ୍ଣ ହୋଇଥାଏ ।

ଏପରି ଏକ ସ୍ଥାନ ଶୁଆକୁ ଭଲ ଲାଗେ । ସେ ଗଛ ଉପରେ ବସି ଭକ୍ତମାନେ ଗାଉଥିବା ଶ୍ଳୋକ ମନେ ରଖି ପଢିବାକୁ ଚେଷ୍ଟା

କରେ । ସେହି ଶ୍ଳୋକର ଅନେକ ଗୁଡ଼ିଏ ପଦ ସେ ଗାଇ ବୁଲେ । ଦିନେ ତାକୁ ଶାସ୍ତି କହେ, ହେ ପ୍ରାଣନାଥ ! ଆପଣ ଏପରି ଶ୍ଳୋକ ବୋଲିବା ଛାଡ଼ି ଦିଅନ୍ତୁ । କାରଣ ମଣିଷ ଏକ ଅଦଭୁତ ପ୍ରାଣୀ । ସେ ଯଦି ଆପଣ ପଢ଼ିବା ଏହି ଶ୍ଳୋକ ଶୁଣିବ ତାହା ହେଲେ ସେ ତୁମକୁ ଧରି ପଞ୍ଜୁରୀରେ ବନ୍ଦୀ କରିଦେବ । ମୁଁ ଆପଣଙ୍କୁ ହରାଇ ଦୁଃଖ କଷ୍ଟ ଭୋଗ କରିବି । ତେଣୁ ଏହି ଶ୍ଳୋକ ପାଠ କରିବା କାର୍ଯ୍ୟ ତୁରନ୍ତ ବନ୍ଦ କରି ଦିଅନ୍ତୁ ।" ଏହା ଶୁଣି ହସି ହସି ଶୁଆ କହେ "ଆମେ ହେଲୁ ପକ୍ଷୀ ଜାତି । କାହାରି ମନରେ ଟିକିଏ ଆନନ୍ଦ ଦେଇ ପାରିଲେ ଆମେ କୃତାର୍ଥ ଲାଭକରୁ । ମଣିଷ ଏତେ ନିର୍ଦ୍ଦୟ ନୁହେ । ଆମକୁ ଏକାକୀ ବସିବାର ଦେଖିଲେ ସେ ନେଇ ପଞ୍ଜୁରୀରେ ବନ୍ଦକରି ଦେବନାହିଁ । ଏହା ପ୍ରମାଣ କରି ମୁଁ ତୁମକୁ ଦେଖାଇ ଦେଇ ପାରେ ।

ଶୁଆ ଦେଖେ ଜଣେ ଭଦ୍ରଲୋକ ତା ଆଡ଼କୁ ଆସୁଛନ୍ତି । ଦେହରେ ଧୋତି ଆଉ ପଞ୍ଜାବୀ । ଗୋଡ଼ରେ ଚପଲ । ହାତରେ ଗୋଟିଏ ଚମତ୍କାର ସୁଟ୍‌କେଶ । ଶୁଆ କଣ ଭାବିଲା କାହିଁକି ଧୀରେ ଧୀରେ ଉଡ଼ିଯାଇ ତାରି ପିଠି ଉପରେ ବସି ପଡ଼ିଲା । ଧୀରେ ଧୀରେ ଲୋକ ମୁଖରୁ ଶୁଣିବା ଶ୍ଳୋକ ଗୁଡ଼ିକୁ ଗାଇବାକୁ ଲାଗିଲା । ଭଦ୍ର ଲୋକ ଜଣକ ତାକୁ ଆଉଁସି ନିଜ ହାତ ଉପରେ ବସାଇ ନିଜର ଗ୍ରାମକୁ ନେଲେ । ସେ ଶୁଆକୁ ଧୀରେ ଧୀରେ କହିଲେ "ତୁମେ ପଞ୍ଜୁରୀରେ ରହିବା ଦରକାର । କାରଣ ଏଠାରେ ତୁମେ ଖୋଲାରେ ରହିଲେ ବିରାଡ଼ମାନେ ତୁମକୁ ଖାଇଦେବେ ।" ଏହା ଶୁଣି ଶୁଆ ଖୁସି ହେଲା ।

ଶୁଆ ଭଦ୍ରଲୋକ ସଙ୍ଗରେ ଯିବାର ଦେଖି ଶାଗୁ ଅନୁତାପ କଲା । ସେ ଧୀରେ ଧୀରେ ଉଡ଼ି ଆସି ପହଞ୍ଚିଲା ଭଦ୍ରଲୋକର ଘରେ । ଦେଖିଲା ଶୁଆ ପଞ୍ଜୁରୀରେ ବନ୍ଦୀ ହୋଇ ରହିଛି । ଏହା ଦେଖି ଶାଗୁକୁ ହସ ମାଡ଼େ । ସେ ପଞ୍ଜୁରୀ ନିକଟକୁ ଆସି କହେ "ଆପଣ ଅନେକ କଥା କହୁଥିଲେ । କିନ୍ତୁ ବନ୍ଦୀ ଅବସ୍ଥାରେ ଅଛନ୍ତି ।"

ଧୀରେ ଧୀରେ ମଧୁର ହସ ହସି ଶୁଆ କହେ "ମୁଁ ବନ୍ଦୀ ନୁହେଁ କିନ୍ତୁ ଏଠାରେ ନିରାପଦରେ ଅଛି । ଯଦି ମୋତେ ପଞ୍ଜୁରୀରୁ ବାହାର କରି ଦିଆଯାଏ ତାହାହେଲେ ଏଠାରେ ଥିବା ମାଂସାଶୀ ପ୍ରାଣୀମାନେ ମୋତେ ଖାଇଯିବେ । ହସି ହସି ଉଡ଼ଯାଏ ଶାଗୁ ଏହା ଶୁଣି ।

ଶାଗୁ ପଞ୍ଜୁରୀ ନିକଟରେ ବସି ଦେଖେ "ଏକ କଳଚ କଳା ବିଲେଇ ଆସି ଶୁଆକୁ ଘୂରି ବୁଲେ । ଶୁଆ କହେ "ଶାଗୁ ତୁମେ ଉଡ଼ି ଚାଲିଯାଅ । ଏହି ବିଲେଇ ତୁମକୁ ଖାଇଯିବ । କଥାଟି ଶାଗୁ ମନକୁ ପାଏ । ତାର ଅବିଶ୍ୱାସ ଦୂରହୁଏ । କେତେ ସମୟ ପରେ ଆସି ପହଞ୍ଚନ୍ତି ଘରର ମାଲିକ । ସେ ମନେ ମନେ ସ୍ଥିର କରେ ଏହି ପଞ୍ଜୁରୀରେ ହିଁ ରହିବ । ସେ ମାଲିକର କାନ୍ଧରେ ବସିପଡ଼େ । ମାଲିକ ତାକୁ ମଧ୍ୟ ଗୋଟିଏ ପଞ୍ଜୁରୀରେ ରଖି ଶୁଆ ନିକଟରେ ଟାଙ୍ଗି ଦିଅନ୍ତି । ଦୁହେଁ ପରସ୍ପରକୁ ଜାଣନ୍ତି । ଦୁହେଁ ପରସ୍ପରକୁ ଅତି ନିକଟରେ ପାଇ ସବୁ କଷ୍ଟ ଦୁଃଖ ଭୁଲି ଯାଆନ୍ତି । ମନୁଷ୍ୟ ପ୍ରତି ଶାଗୁର ମନରେ ଯେଉଁ ଘୃଣା ଥିଲା ତାହା ଆପେ ଆପେ ଦୂର ହୋଇଯାଏ ।

ଧନେ ଶୁଆ ମାଲିକଙ୍କୁ କହେ ସେ ଦୁହିଁଙ୍କୁ ଛାଡ଼ି ଦେବା ପକାଶେ । ସେ ଦୁହେଁ ମୁକ୍ତ ହୋଇ ଆକାଶରେ ଉଡ଼ି ବୁଲନ୍ତି ଏବଂ ଫେରି ଆସନ୍ତି ସେନ୍ତି ମହାନ କାନ୍ତୁଆ ସମୀପସ୍ଥ ବନକୁ । ସେମାନେ ଉଡ଼ିବା ସମୟରେ କଳା ବଦଳେଇଛନ୍ତି ସେଉଁ ପକ୍ଷେ ଆକାଶକୁ ଟାଣିବା ପକାଶେ । ଦୁହେଁ ହସି ହସି କହନ୍ତି ସଲାମ, ବଦଳେଇ ମଉସା । ଆମେ ଏବେ ବହୁ ଦୂରରେ ମଳ ଆକାଶରେ ଉଡ଼ି ବୁଲୁଛୁ ।



# ଶୃଗାଳ ଦମ୍ପତି

ଗାଁର ନଦୀ କରେ ଅନେକ ଗୁଡ଼ାଏ ପକ୍ଷୀ ବର ଗଛର ଡାଳରେ ବସି ରହି ଗପ ଶୁଣିବାକୁ ଲାଗିଥାନ୍ତି । ଅନ୍ଧକାରରେ ମୁହଁକୁ ମୁହଁ ଦେଖା ଯାଉ ନ ଥାଏ । ଏହାପରେ ଗଛିର ନସ୍ତବ୍ଧତାରେ ଶାଗୁଣା ତାର କାହାଣୀ କହିବାକୁ ଯାଇ କହେ "ସେ ଦିନର ସକାଳ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ହୋଇଥିଲା । ଗୃହଅଞ୍ଚଳ ଚରାଚରମାନ କରିଥିଲା ସମ୍ପୂର୍ଣ୍ଣ ନୀରବତା । ସୂର୍ଯ୍ୟଙ୍କର କନକ କିରଣ ବୃକ୍ଷଲତା ପାହାଡ଼ ପର୍ବତ ଉପରେ ପଡ଼ି ଅପୂର୍ବ ସୌନ୍ଦର୍ଯ୍ୟ ପ୍ରଦାନ କରୁଥିଲା । ପକ୍ଷୀମାନଙ୍କ କଳରବ ସହ ବୃକ୍ଷଙ୍କର ସବୁଜ ସୌନ୍ଦର୍ଯ୍ୟ ମାନବ ମନରେ ମାଦକତା ପ୍ରଦାନ କରୁଥାଏ । ନିକଟରେ ବହୁଥିବା ଝରଣାରୁ କଳ କଳ ଶବ୍ଦ ପଥିକ ମନରେ ଅପୂର୍ବ ଆନନ୍ଦ ସଞ୍ଚାର କରେ । ଏପରି ଏକ ସ୍ଥାନରେ ଏକ କୋଲୁଆ ଦମ୍ପତି ବାସ

କରୁଥାନ୍ତି । ସେମାନେ ପରସ୍ପରକୁ ନିବିଡ଼ ଭାବରେ ଭଲ ପାଆନ୍ତି । ସେହି ଅଞ୍ଚଳରେ ଥିବା ଝରଣାର କୂଳେ କୂଳେ ବୁଲି ଚେଣ୍ଡା କୋଚିଆ ପ୍ରଭୃତି ଖାଆନ୍ତି । ସମୟେ ସମୟେ ଯଦି କୌଣସି ଛୋଟ ଜନ୍ତୁ କିଛି ଶିକାର କରି ଭକ୍ଷଣ କରେ ଏବଂ କିଛି ଅଂଶ ଛାଡ଼ି ଦେଇଥାଏ ତାହା ହେଲେ ଏ ଦୁହେଁ ଆନନ୍ଦରେ ତାହା ଭୋଜନ କରି କାଳାତିପାତ କରନ୍ତି । ସେହି ସ୍ଥାନରେ କୁକୁର ମାନଙ୍କ ଯିବା ଆସିବା ବହୁତ କମ । ଶିକାରୀମାନେ ମଧ୍ୟ କମ ଯିବା ଆସିବା କରନ୍ତି । ତେଣୁ ଏମାନଙ୍କ ଆଉ ଭୟ କିଛି ନ ଥାଏ । ଅତି ସୁନ୍ଦର ଭାବେ ପ୍ରେମାଳାପ କରି ଉଭୟେ ସମୟ ବ୍ୟତୀତ କରୁଥାନ୍ତି ।

କାଳକ୍ରମେ ମାଈ ବିଲୁଆଟି ଦୁଇଟି ସନ୍ତାନ ଜନ୍ମ କଲେ । ସେ ଦୁଇଟି ମଧ୍ୟରୁ ଗୋଟିଏ ପୁଅ ଏବଂ ଅନ୍ୟଟି ଝିଅ । ମାଆର ସ୍ତନ ପାନ କରି ଛୁଆ ଦୁଇଟି ହୃଷ୍ଟପୁଷ୍ଟ ହୋଇ ଉଠନ୍ତି । ସେମାନେ ମଧ୍ୟ ମାଆ ବାପାଙ୍କୁ ଛାଡ଼ି ସମୟେ ସମୟେ ବୁଲିବାକୁ ଯାଆନ୍ତି ।

ଦିନକର କଥା . ଶୃଗାଳ ଶିଶୁ ଦୁଇଟି ବୁଲି ବୁଲି ଥକି ଯାଆନ୍ତି । ସେମାନେ ଗୋଟିଏ ବଣମଲ୍ଲି ଗଛ ମୂଳରେ ବସି ହାଲିଆ ମାରିବାରେ ଲାଗନ୍ତି । ଏହି ସମୟରେ ଦୂରରୁ ଶୁଣାଯାଏ ଶ୍ୱାନଙ୍କ ଆସିବାର ଶବ୍ଦ । ଜଣେ ଶିଶୁ ଅନ୍ୟ ଜଣକୁ କୁହେ "ଆଜି ଆମ ଦୁଇ ଜଣଙ୍କର ମୃତ୍ୟୁ ନିଶ୍ଚୟ । ବର୍ତ୍ତମାନ ଚାଲ ଧାଇଁ ଧାଇଁ ବସାକୁ ପଳାଇଯିବା" ଦୁହେଁ ଧାଇଁବାକୁ ଲାଗନ୍ତି । କୁକୁରମାନେ ଦୂରରୁ ଶୃଗାଳ ଶିଶୁଙ୍କ ଗନ୍ଧ ବାରି ପାରନ୍ତି । ସେମାନେ ଗୋଡ଼ାଇ ଚାଲନ୍ତି ଶୃଗାଳ ଶିଶୁଙ୍କ ପଛରେ । ଏହିପରି ଭାବେ ଶୃଗାଳ ଶିଶୁ ଅତି

କୁକୁର ମାନଙ୍କ ମଧ୍ୟରେ ଏକ ପ୍ରକାର ପ୍ରତିଯୋଗିତା ଆରମ୍ଭ ହୋଇ ଯାଏ ।

ଶିଶୁ ଦ୍ୱୟଙ୍କୁ ନ ଆସିବାର ଦେଖି ଶୃଗାଳ ଦମ୍ପତି ଚିନ୍ତିତ ହୋଇ ଉଠନ୍ତି । ସେମାନେ ଧୀରେ ଧୀରେ ଅଗ୍ରସର ହୁଅନ୍ତି ଆଗକୁ ଆଗକୁ । ଦୂରରୁ ଶୃଗାଳ ଶିଶୁଙ୍କୁ ଆସୁଥିବାର ଦେଖି ସେମାନେ ବୁଝି ପାରନ୍ତି କୁକୁରମାନେ ତାଙ୍କ ପଛରେ ଗୋଡ଼ାଉଛନ୍ତି । ସେମାନଙ୍କୁ ନିଜ ବସାର ଗାତ ଭିତରେ ଆଶ୍ରୟ ନେବାକୁ କହି ଦୁଇ ଜଣ ଅନ୍ୟ ଦିଗରେ ଧାବମାନ ହୁଅନ୍ତି । କୁକୁରମାନେ ଶୃଗାଳ ଦମ୍ପତିଙ୍କ ପଛରେ ଧାଇଁବାକୁ ଲାଗନ୍ତି । ଏପରି ଭାବେ ଶୃଗାଳ ଶିଶୁ ଦ୍ୱୟ ନିରାପଦରେ ନିଜ ବସାରେ ଆଶ୍ରୟ ନିଅନ୍ତି ।

କିଛି ଦୂର ଅଗ୍ରସର ହେଲା ପରେ ଆଗରୁ ଏକ ବ୍ୟାଧ ଜନା ପକାଇ ଥାଏ । ସେହି ଜନାକୁ ଦୂରରୁ ଦେଖି ଶୃଗାଳ ନିଜର ପ୍ରିୟା ଉଦ୍ଦେଶ୍ୟରେ କୁହେ "ହେ ପ୍ରିୟେ ! ଆମେ ସିଧା ଦୌଡ଼ ନାହିଁ । ଆଗରେ ଜନା ଅଛି । ସେଇଠାରୁ ଅଳ୍ପ ଦୂରରେ ଜଙ୍ଗଲ ଭିତରକୁ ଦୌଡ଼ିଯିବା । ଏହା କହି ସେମାନେ ବାଟ ଭାଙ୍ଗି ଦୌଡ଼ି ପଳେଇଲେ । ଏହା ଭିତରେ ଗୋଟିଏ ଗଧିଆ ବାଘ ବଳିଆ ଦୁଇଟିକୁ ଖାଇବା ଆଶାରେ ଲୁଚିଥିବା ସ୍ଥାନରୁ ବାହାରି ତାଙ୍କରି ପଛରେ ଦୌଡ଼ିଗଲା । ଶେଷରେ ଯାଇ ପଡ଼ିଲା ଜନାରେ । ପଛରୁ ଆସୁଥିବା ବଣୁଆ କୁକୁରମାନେ ସେଠାରେ ପହଞ୍ଚି ଗଧିଆକୁ ଚାରିପଟେ ଘେରିଯାଇ ମାରି ପକାଇଲେ । ଶେଷରେ ଶୃଗାଳ ଦମ୍ପତି ନିଜ ବସାରେ ପହଞ୍ଚି ସମସ୍ତ ଘଟଣା ବର୍ଣ୍ଣନା କଲେ ନିଜର ଶିଶୁ ଦୁଇଟିଙ୍କ ଆଗରେ । ସେହି ଦିନୁ ଶୃଗାଳମାନେ ମାଆଙ୍କ ପଛେ ପଛେ ଖାଦ୍ୟ ଅନ୍ୱେଷଣରେ ବାହାରି ପଡ଼ନ୍ତି ।



# ପୁନର୍ମିଳନ

ସେଦିନ ପକ୍ଷୀ ମାନଙ୍କର ଗହଳ ଚହଳରେ ଚେତନା ଫୋଟେଇ ହୃଣ୍ଡାର ବର ଗଛଟି ଭରି ଉଠୁଥାଏ । ଅନ୍ଧକାରରେ କହିବାକୁ ଆରମ୍ଭ କରେ ଥାଏ କାହାଣୀ ବଡ଼ ପକ୍ଷୀଟିଏ । ସେହି ପକ୍ଷୀଟି ଅଳ୍ପ ସମୟ ପାଇଁ ଏହି ଗଛରେ କୁଣିଆ ଭାବରେ ଆସିଥାଏ । ତା'ର ଘର ହେଉଛି ହୀରାକୁଦ ବନ୍ଧ । ସେଦିନ କାହାଣୀ କହିବାକୁ ଯାଇ କହେ "ସେ ଦୁହେଁ ପ୍ରେମିକ ପ୍ରେମିକା । ଚାଲନ୍ତି ଆସନ୍ତି ହୀରାକୁଦ ବନ୍ଧ ହୁଡ଼ାକୁ ବୁଲିବାକୁ । ମୁଁ ଦୂରରୁ ସେମାନଙ୍କ ଉପରେ ନଜର ରଖି ଥାଏ । ଜଣେ ବ୍ରାହ୍ମଣ ଘରର ପୁଅ ଓ ଅନ୍ୟ ଜଣକ ଗୁଡ଼ିଆ ଘରର ଝିଅ । ସେମାନେ ନିକଟସ୍ଥ ସ୍କୁଲରେ ପାଠ ପଢନ୍ତି । ସେମାନଙ୍କର ବୟସ ଦଶ ବର୍ଷ ହେବ । ଏତେ ଛୋଟ ବୟସରୁ ସେମାନେ ପରସ୍ପରକୁ ଭଲ ପାଆନ୍ତି । ସେମାନଙ୍କ ଭଲ ପାଇବାରେ ସେପରି ଗୋଟାଏ କଣ୍ଟା ନ ଥାଏ କିନ୍ତୁ ସେମାନେ କଥା ବାର୍ତ୍ତା ହୁଅନ୍ତି "ସରିତା ତୁମକୁ ନ ଦେଖିଲେ ମୁଁ ରହି ପାରେନା । ସ୍କୁଲରେ ପଢ଼ୁଥିଲି ମାତ୍ରକେ ମୋର ଆଖି ଦୁଇଟା ଆପେ ଆପେ କ୍ଲାସ ରୁମର ଚତୁର୍ଦ୍ଦିଗରେ ଖେଳିଯାଏ ତୁମର ଏହି ଛୋଟ ଗୋଲ ଛକ ଛକ ମୁହଁଟିରେ ଯେପରି ସବୁ ସୁଖ, ସବୁ ଶାନ୍ତି ଭରି ରହିଛି ।

ମୁଁ ଦେଖେ ସେମାନଙ୍କ କଥା ବାର୍ତ୍ତା, ପରସ୍ପର ପ୍ରତି ପରସ୍ପରର ଆକର୍ଷଣ ବହୁତ ଅଧିକ । ଦିନକର ଘଟଣା, ଝିଅଟି ଜ୍ୱରରେ ପଡ଼ିଯାଏ । ଅତି ଭୟଙ୍କର ଜ୍ୱର । ମୁଁ ଗଛ ଡାଳରେ ବସି

ଦେଖିଛନ୍ତି, ପୂଅଟି ଆସି ଅଦୂରରେ ବସି ସ୍ମିଗ୍ଧକୁନ୍ଦନ ଜଳ ରାଶିକୁ ଅନାଇ ରହିଛନ୍ତି । ଦୂରରେ ଥିବା ପ୍ରକୃତିର ମନୋରମ ଦୃଶ୍ୟ, ମନ୍ଦ ମନ୍ଦ ପବନ ତାଙ୍କୁ ମୁଗ୍ଧ କରି ପାରୁନି ।

ଅନ୍ୟ ଦିନକର କଥା । ସମୟର ଗତି ଅନୁସାରେ ଉଭୟେ ବଡ଼ ହେବାକୁ ଲାଗିଥାନ୍ତି । ବାଳକଟି କ୍ରମେ ଯୁବକ ହେବାକୁ ଲାଗେ । ତାର ବଳିଷ୍ଠ ବାହୁ ଯୁଗଳ, କୋମଳ ଗୁମ୍ଫ ଏବଂ ନାକ ତଳେ ଥିବା ସୁନ୍ଦର ତିଳ ଦେଖି ସରଳା ପାଗଳୀ ହୋଇ ଉଠିଥାଏ । ସେ ସ୍ମିଗ୍ଧକୁନ୍ଦ ବନ୍ଧ ହୁଡ଼ାରେ ବସି ବସି ଚାହିଁ ଆଣେ ସୁରଥକୁ । ସରଳା ମନ ଭରି ଦେଖେ ତାର ଅତି ଆପଣାର ଯୁବକ, ପ୍ରାଣ ପ୍ରିୟ ସୁରଥକୁ । ଯେପରି ଯେତେ ଦେଖିଲେ ଏହି ସୁନ୍ଦର ରୂପ ତାଙ୍କୁ ନୂଆଁ ଲାଗୁଛି ।

ମଦମତ୍ତ ଯୌବନରେ ନିଜର ଅଙ୍ଗରାଜିକୁ ଭରି ସରଳା ଅନୁପମ ସୁନ୍ଦରୀ ହୋଇଯାଏ । ତାର ବଡ଼ ବଡ଼ ଆଖି, ନାଲି ନାଲି ଓଠ, ଅଙ୍କା ବଙ୍କା ଭ୍ରୂଲତା, ଧଳା ଧଳା ଦନ୍ତପନ୍ତି, ସୁଷମ ଅଙ୍ଗ ରାଜି ଏବଂ ମିଠା ମିଠା କଥା ଯେ କୌଣସି ପୁରୁଷର ମନ କିଣି ନେବା ସକାଶେ ସକ୍ଷମ । କିନ୍ତୁ ସେ ଭୁଲରେ ସୁଦ୍ଧା କାହାରିକୁ ଅନାଏ ନାହିଁ । ତାର ବାଲ୍ୟ ବନ୍ଧୁ ସୁରଥ ହିଁ ତାର ସବୁ କିଛି । ତାଙ୍କୁ ମନ ପ୍ରାଣ ଆଉ ଶରୀର ଅର୍ପଣ କରିବାକୁ ସଦା ସର୍ବଦା ତତ୍ପର ।

ଅନ୍ୟ ଦିନକର କଥା । ଦୁହେଁ ଆନନ୍ଦ ମନରେ ଘୁରି ବୁଲୁଛନ୍ତି ସ୍ମିଗ୍ଧକୁନ୍ଦ ବନ୍ଧର ତଟ ଦେଶରେ । ବିଭିନ୍ନ ପ୍ରକାର ବୃକ୍ଷର ଶୀତଳ ଛାୟା ମନ ମୁଗ୍ଧ କରି ଦେଉଛି । ଅତୁଳନୀୟ ରୂପରାଶି ନେଇ ଉଭୟେ ଉଭୟଙ୍କୁ ଅନାଇ ରହନ୍ତି । ସୁରଥ କହେ "ସରଳା ମୁଁ କାଲି ଚାଲି ଯାଉଛି ବୁର୍ଲା । ସେଇଠାରେ ବୋର୍ଡିଂରେ ରହି ମୁଁ

କଲେଜରେ ପଢ଼ିବ । କେବଳ ସାତ ଦିନକୁ ଥରେ ହିଁ ତୋର ସହିତ ଦେଖା ହେବ । ମୁଁ ଭାବୁଛି, ମୁଁ କଣ କରିବି ? ତୁମାର କଲେଜ କଣ ମୋତେ ଆନନ୍ଦ ଦେଇ ପାରିବ ? ତୁମ କଥା ସ୍ନେହ ଆଉ ସାନ୍ନିଧ ପାଇବାକୁ ତ ମୁଁ ଏକା ବେଳକେ ପାଗଳ ହୋଇ ଉଠିବି ? ହେ ସୁନ୍ଦରୀ । ତୁମେ ମୋତେ ସାହାଯ୍ୟ କର । ତୁମେ କପରି ହେଲେ ଚାଲି ଆସ ତୁର୍ଲି ।

ସତେ କି ବଜ୍ରପାତ ହୁଏ ସରଳାର ମୁଣ୍ଡରେ । ସେ କିବା ତାଂରେନ ଏହାର ପରିଣତି କଣ ବା ହେବ ? ସତେ କଣ ସେ ତାର ଅତି ପ୍ରିୟ ସ୍ୱାମୀକୁ ନ ଦେଖି ରହି ପାରିବ । ସେ କହେ "ଯେପରି ହେଲେ ତୁମେ ତୁର୍ଲି ଯା ଆସ କର । ଚୁମ୍ବକ ତ ବସ ଯିବ, ଆସିବା କରୁଛି । ତୁମକୁ ନ ଦେଖି ମୁଁ ବଞ୍ଚି ପାରିବ ନାହିଁ । ଏହି ସ୍ଥାନରେ ବସି ବସି ମୁଁ ପ୍ରାଣ ତ୍ୟାଗ କରିବି ।

ଧନୀ ଘରର ଝିଅ ସରଳା । ଦିନ୍ଟି ଦିନକୁ ତାର ମାଆ ମରି ଯାଇଛନ୍ତି । ସେ ବାପାଙ୍କ କୋଳରେ ବଢ଼ି ରହିଛି । ସେ ଘରକୁ ଯାଇ କାଇଁ କାଇଁ ହୋଇ କାନ୍ଦି ଉଠେ । ବାପାଙ୍କୁ କହେ ସହରକୁ ଯାଇ କଲେଜରେ ଜଇନ ହେବାକୁ । ବାପା ହସି ଉଠି କହନ୍ତି ଆଚ୍ଛା ! ମୁଁ ମଧ୍ୟ ତୋର ସହିତ ତୁର୍ଲି ଯିବି । ମୋର ବା ଏଠାରେ କଣ ଅଛି । କେବଳ ରୁଆ ବୁଆ ସମୟରେ ଆସି ବିଲ ବାଡ଼ି କାମ କରାଇ ନେବା ।"

ସରଳା ବି ଜଇନ୍ ହୁଏ କଲେଜରେ । କିନ୍ତୁ ଏକ ଅଦ୍‌ଭୁତ-ପୂର୍ବ ଆନ୍ଦୋଳନ ହୁଏ ତୁର୍ଲିରେ । ସମସ୍ତେ ଆନ୍ଦୋଳନ କରି ଉଠନ୍ତି ସରକାର ବିରୁଦ୍ଧରେ ଅଧିକ ସୁବିଧା ସୁଯୋଗ ଦାବି କରି ।

ସୁରଥଙ୍କୁ ପୋଲିସ ଧରି ନିଏ । ସୁରଥ ଫେରି ଆସେ ପୋଲିସ ହାଜତରୁ ସତ କିନ୍ତୁ ସେ ସ୍ୱର୍ଗପଥେ । ସରଳା ଗାଆଁକୁ ଯାଏ ବାପାଙ୍କ ସହିତ । କିନ୍ତୁ ସୁରଥର ଜେଲ ଯିବା ଶୁଣି ସେ ଅଧା ପାଗଳୀ ହୁଏ । ଅତ୍ୟନ୍ତ କଷ୍ଟରେ ସେ ଚଲି ବୁଲି କରେ, ରୋଗରୁ ଭଲ ହୁଏ ।

ଉଭୟେ ଗାଁକୁ ଫେରନ୍ତି । ସୁରଥର ପାଠପଢ଼ା ବନ୍ଦ । ସରଳା ମଧ୍ୟ ଆଉ ପଢ଼ିବାକୁ ଯାଏ ନା । ସରଳାର ଇଚ୍ଛା ଅନୁଯାୟୀ ସରଳାର ବିବାହ ହୁଏ ସୁରଥ ସହ । ସେମାନେ ପୂର୍ବ ଭଳି ଆମ୍ବ ଗଛର ତଳରେ ବସି ହୀରାକୁଦ ଜଳ ଭଣ୍ଡାରର ଦୃଶ୍ୟ ଦେଖିବାରେ ଲାଗନ୍ତି । ଥରେ ଥରେ ସରଳା ଦୁଷ୍ଟାମି କରି କହେ "ମୋର ତ ଆଉ ସେହି ସୁନ୍ଦର ରୂପ ନାହିଁ, ତୁମେ ମୋତେ କାହିଁକି ବିବାହ କଲ" ସୁରଥ ହସି ହସି କହେ "ତୋର ଏପରି ଦୁଷ୍ଟାମି କଥା ଶୁଣିବି ବୋଲି । ଦୁହେଁ ହସି ଉଠନ୍ତି ।

## ଯମ ଦୂତ

ସବୁଦିନ ଭଳି ପକ୍ଷୀମାନେ ଆସି ବର ଗଛର ଡାଳରେ ବସିଲେଣି ଗଭୀର ଅନ୍ଧକାରରେ ମୁହଁକୁ ମୁହଁ ଦିଶୁନି । ଆଜି ଜଣେ ଅତିଥି ପକ୍ଷୀ ତାଙ୍କର କାହାଣୀ କହୁଛନ୍ତି । ସେ ଆସିଥାନ୍ତି ବ୍ରହ୍ମପୁର ବିଦ୍ୟୁତ୍‌ପୁଷ୍ଟରୁ । ସେ ତାଙ୍କ କାହାଣୀ ଆରମ୍ଭ କରି କହନ୍ତି ,,ମୁଁ ବିଦ୍ୟୁତ୍‌ପୁଷ୍ଟ ମଧ୍ୟରେ ଥିବା ଆମ୍ବ ଗଛର ଡାଳରେ ସଦା ସର୍ବଦା ରହେ । ଏଠାରେ ଆମ୍ବ ଗୁଡ଼ିକ ମିଠା । ତେଣୁ ଦିନରେ ମଧ୍ୟ ଏହି

ଆମ୍ଭ ଗଛର ଡାଳରେ ରହି ଦେଖେ ଗୋଟାଏ କଳା ବଲେଇ ଏହି ଅଞ୍ଚଳରେ ବୁଲି ବୁଲି କରୁଛି । ତାର ଶରୀରଟି ଲୋମଶ ଓ ମୋଟା ।

ତା ଆଖି ଦୁଇଟି ଚକ୍‌ଚକ୍ । ଅନ୍ଧକାର ଭିତରେ ଦେଖିଲେ ଦୁଇଟି ଆଖି ତାର ଜପ୍‌ର ଦୁଇଟି ହେଡ୍‌ଲାଇଟ୍ ଭଳି ଜଣା ପଡେ । ତାକୁ ଦେଖିଲା ମାତ୍ରେ ଛୁଆ ଓ ସ୍ତ୍ରୀ ଲୋକମାନେ ଭୟରେ ଥର ହୁଅନ୍ତି । ହଠାତ୍ କଳା ସେ ଘର ଭିତରକୁ ପଶି ଆସେ । ଏହି କଳା ବଲେଇଟିକୁ କେହି କେହି 'ଯମ ଦୂତ' ବୋଲି କହୁଥାନ୍ତି ।

ଏହି ଅଞ୍ଚଳରେ ଏକ ଧଳା ଫର ଫର ଶାଙ୍ଖୀ ବଲେଇ ବାସ କରେ । ତାର ନାମ କୁସୁମ । କୁସୁମ ଆଖ ପାଖ ଘରମାନଙ୍କୁ ବୁଲି ଯାଏ । ଯାହା ଘରକୁ ତୁମେ ଯିବ ତେବେ ଏହି କୁସୁମକୁ ଦେଖିବାକୁ ପାଇବ । ଠିକ୍ ତ ସମୟେ ସମୟେ ଆଶ୍ଚର୍ଯ୍ୟରେ ପଡ଼ିଯାଏ ସେ ଘରେ କହେ "ବାଃ ! ମୁଁ ଏହାକୁ ରଢ ଘରେ ଦେଖି ଆସିଲି ବେଳକୁ ଇଏ ଆମ ଘରେ ହାଜର ହୋଇ ଯାଇଛି । ମାଆ କହନ୍ତି "ଆମ କୁସୁମ ସମସ୍ତଙ୍କର ଖାଇବା ସମୟ ଜାଣି ଦେଉଛି । ସେହି ସମୟ ଅନୁସାରେ ସେ ସେହି ଘରେ ପହଞ୍ଚି ଯାଉଛି ।"

ଏହି ଶାଙ୍ଖୀ ବଲେଇଟି ଏହି କଳା ଭୂଆକୁ ଦେଖି ଡରେ । ଥରେ ଥରେ ଏମାନଙ୍କ ମଧ୍ୟରେ ମିତ୍ରତା ଘଟି ଯାଏ । ଏମାନଙ୍କ ମିତ୍ରତା ମୁଁ ମଧ୍ୟ ଦେଖେ ଗଛ ଡାଳରେ ବସି । ଏକ ସୁନ୍ଦର ଶାଙ୍ଖୀ ବଲେଇ ସହ ଏହି କଳା ମିଚମିଚ ଭୂଆର ମିତ୍ରତା । ତାହା ପୁଣି ଦିନେ ଦୂରଦିନ ସକାଳେ ଦେଖିଥିଲି ବଡ ସମସ୍ତେ ଆଶ୍ଚର୍ଯ୍ୟ

ହୁଅନ୍ତି । ଏମାନଙ୍କ ମିଳାମିଶାର ଫଳ ସ୍ୱରୂପ ଶଙ୍ଖି ଗର୍ଭବତୀ ହୁଏ । କେହି ବା ଆଉ କଣ କରନ୍ତି ? ଏହି କଳା ମିଶା ମିଶା ଯମ ଦୂତର ଦେହରେ ଆଉ କୌଣସି ଭୂଆ ଏହି ଅଞ୍ଚଳରେ ଦେଖା ଦଅନ୍ତି ନାହିଁ । କିଏ ବା ଯମ ଦୂତ ହାବୁଡରେ ପଡିବ ?

ଏହି ଦୁଇ ଦଳ ବଡଗଲେ 'ଯମ ଦୂତ' ସବୁ କିଛି ପରିଶାର ଚଳାଏ । ଶଙ୍ଖି ତାର ପ୍ରେମିକା ତାର ସନ୍ତାନକୁ ଶଙ୍ଖୀ ନିଜ ଗର୍ଭରେ ଧରି ବୁଲୁଛି ଏ କଥା ମଧ୍ୟ ଯମ ଦୂତର ମନେ ରହେନା ।

ଶଙ୍ଖୀ ଅଳ୍ପ ସମୟ ଧକାଶେ ଯମ ଦୂତର ସାନ୍ନିଧ ପାଇଁ ନିଜକୁ ଭାଗ୍ୟବତୀ ମନେ କରେ । ସେ ଜନନୀ ହେବାର ସମ୍ମାନ ଲାଭ କରିବାର ଆଶା ନେଇ ଅପେଛିତା ହୁଏ । ଦୂରରୁ ଯମ ଦୂତକୁ ଦେଖିଲେ ଲାଙ୍ଗୁଳ ହଲେଇ ମନେ ଟେକାଇବାକୁ ଚେଷ୍ଟା କରେ ସେହି ସୂତ୍ର । ମନେ ଟେକାଇବାକୁ ଚେଷ୍ଟା କରେ ଯେ ସେ ତାର ସନ୍ତାନର ଜନନୀ ହେବାକୁ ଯାଉଛି । କିନ୍ତୁ 'ଯମ ଦୂତ' ତାହା କିଛି ହେଲେ ମନେ ପକାଇବାକୁ ଚେଷ୍ଟା କରେନା । ସେ ଧାଇଁ ଆସି କାମୁଡି ପକାଏ ହୁନଙ୍କ ଶଙ୍ଖିକୁ । ମଧୁର କଥୋପକଥନର ଆଶା ନେଇ ଧାଇଁ ଯାଇଥିବା ଶଙ୍ଖି ଫେରି ଆସେ ଅଶ୍ରୁ ଧଇଁ ହଇଁ ହୋଇ ଆଶ୍ରୟ ନିଏ ତାର ସାଉକାର ଘରେ ।

ବର୍ତ୍ତମାନ ଶଙ୍ଖୀ ଅନୁମାନ କରେ ଯେ କଳା ବିଲେଇଟି ତାକୁ ଦେଖିଲା ମାତ୍ରେ ରେଡ଼ାଇ ଆସି ତାକୁ ଲେଖିବାଇ ପକାଉଛି । ସେ ମନ ଶଙ୍କର ଦେଇ ଯାହାକୁ ନିଜର ପ୍ରିୟତମରୂପେ ବାଛି ନେଇଥିଲା ସେ ତାକୁ ଦେଖିଲେ ଏପରି କାହିଁକି ହେଉଛି ଭାବି ପାରେନା ।

ବନ ଆସେ । ସେ ହୁଏ ତନୋଟି ସନ୍ତାନର ଜନନୀ । ତାର ମନ ଆନନ୍ଦରେ ନାଚଉଠେ । ସେ ନିଜକୁ ଭାଗ୍ୟବନ୍ତ ମନେ କରେ । କିନ୍ତୁ ତାର ଆନନ୍ଦ ଅଳ୍ପ କ୍ଷଣ ସକାଶେ ରହେ । ସେ ଦେଖେବେଳେ ଭାବେ ଯେ ତାର ପ୍ରିୟତମ ଯମ ଦୂତ ଯେତେବେଳେ ଜାଣିବ ତାର ଛୁଆ ହୋଇଛି ସେ ସେଗୁଡ଼ିକୁ ନିଶ୍ଚୟ ମାର ପକାଇବ । ସେ ବା ଆଉ କଣ କରିବ ? ତାର ରହିବା ଘରର ପଡ଼ଶା ଘରେ ନେଇ ଛୁଆ ଗୁଡ଼ିକୁ ଲୁଚାଏ । ସେ ଖରିଟି କ୍ଷ ଣ ପଡ଼ୁଛି । ସେ ଆଜ ନିଶ୍ଚିନ୍ତ ହୋଇ ଯାଇଛି । ତାର ଛୁଆ ଗୁଡ଼ିକୁ ସେ ନିରାପଦରେ ରଖି ପାରିଛି ।

କିନ୍ତୁ ନାହିଁର ଗଖିରତା ମଧ୍ୟରେ ସେ ଛୁଆ ଗୁଡ଼ିକର ବିକଳ କ୍ରନ୍ଦନ ଶୁଣିବାକୁ ପାଇଛି । ତାର ନିଦ ଭାଙ୍ଗି ଯାଇଛି । ସେ ଉଠି ଝାମ୍ପି ପଡ଼ୁଛି ଯମ ଦୂତ ଉପରେ । ଶେଷରେ ଯମ ଦୂତ ନିଜ ଶରୀରରେ ଅନେକ କ୍ଷତ ଖାଇ ପଳାଇ ଯାଉଛି । କିନ୍ତୁ ଶର୍ଗି ଦେଖିଛି ତାର ଦୁଇଟି ଅଣ୍ଡିର ଛୁଆକୁ ମାର ପକାଇଛି ଯମ ଦୂତ । କେବଳ ବଞ୍ଚି ରହିଛି ଗୋଟିଏ ଛୁଆ । ସେ ମନେ ମନେ ନିଷ୍ପତ୍ତି କରି ନେଲା ମୋ ଛୁଆର ହତ୍ୟାକାରୀର ରାଜ୍ୟରେ ମୁଁ ରହିବି ନାହିଁ । ମୁଁ ଚାଲିଯିବି ଏପରି ଏକ ରାଜ୍ୟକୁ ଯେଉଁଠାରେ ଭୂଆମାନେ ତାର ଛୁଆକୁ ହିଂସା କରୁ ନ ଥିବେ । କିନ୍ତୁ ଏପରି ସ୍ଥାନ କଣ ଖୋଜି ବାହାର କରିବା ସମ୍ଭବ ? ସେ ଖୋଜି ବୁଲିଛି ଅନେକ ସ୍ଥାନ । ତାର ରୂପ ଯୌବନରେ ଆକର୍ଷିତ ହୋଇ ଯେଉଁ ଭୂଆ ତାର ନିକଟକୁ ଆସିଛନ୍ତି ସେ ତାକୁ ପ୍ରଶ୍ନ ପଚାରିଛି "ତୁମର ସ୍ଥାନକୁ ମୁଁ ଆସିଲେ କଣ ମୋର ଛୁଆକୁ ତୁମେ ମାରିବେନି ? "ସମସ୍ତେ ତୁମା ହୁଅନ୍ତି । ଶର୍ଗୀ ତାର ନିଜ ସ୍ଥାନକୁ ଫେରି ଆସେ, ଆଜ

ଯେତେବେଳେ ଯମଦୂତ ତାକୁ ପ୍ରେମ ଆବେଦନ କରେ ସେ ତାକୁ ନ ଅନାଇ ପଳାଇ ଆସେ । ସେହି ଦିନୁ ସେ ଆଉ କୌଣସି ପ୍ରେମରେ ପଡ଼ିନି କି ଗର୍ଭ ମଧ୍ୟ ହୋଇନି । ଶଙ୍ଖୀର ଝିଅ ମଧ୍ୟ ବର୍ତ୍ତମାନ ଯୁବତୀ ହୋଇ ସାରିଲଣି । କିନ୍ତୁ ଶଙ୍ଖୀ ବୋଧହୁଏ ଜାଣି ପାରିଛି ଗୋଟିଏ ଛୁଆ ହିଁ ପରିବାର ପାଇଁ ଯଥେଷ୍ଟ ।



# ବଳରାଜ

ପକ୍ଷୀମାନଙ୍କ ଗହଣରେ, ରାତିର ଅନ୍ଧକାରରେ ବର ଗଛ ଉପରେ ତାହାର କାହାଣୀ କହି ବସିଥାଏ ବୁଢ଼ା ପେଚଇ । ସେ ତାର କାହାଣୀ କହିବାକୁ ଯାଇ କହେ "ଗୋଟିଏ ଘଞ୍ଚ ଅରଣ୍ୟ । ସେଠାରେ ନାନା ପ୍ରକାରର ବୃକ୍ଷ ଦେଖାଯାନ୍ତି । ଗଛକୁ ଗଛ ଲାଗି ସେଠାରେ ଏପରି ଭାବରେ ଅଛନ୍ତି ଯେ ଟିକିଏ ଶବ୍ଦ ହେଲେ ବଡ଼ ଶବ୍ଦ ହେଲା ଭଳି ମନେ ହୁଏ । ସେହି ବଣ ମଧ୍ୟରେ ଏକ ବିରାଟ ନଦୀ ବହି ଯାଉଛି । ସେହି ବଣଟି ସନ୍ତସନ୍ତିଆ ଆଉ ସ୍ୱାସ୍ଥ୍ୟ ପକ୍ଷେ ଅନୁକୂଳ ନୁହେଁ । ସେହିଠାରେ ବାସ କରନ୍ତି ଅନେକ ଜାତିର ଦୀର୍ଘକାୟ ବଳିଷ୍ଠ ସମ୍ବର । ଏମାନଙ୍କ ମଧ୍ୟରେ ଗୋଟାଏ ବିରାଟ-କାୟ, ଶକ୍ତିଶାଳୀ ସମ୍ବର ଥାଏ ଯାକୁ ଦେଖି ମାଂସାଶୀ ପଶୁଏ ମଧ୍ୟ ଭୟ ପାଇ ଏମାନଙ୍କ ଉପରେ ଆକ୍ରମଣ କରିବା ସକାଶେ ସାହସ କରେ ନାହିଁ ।

ଅନେକ ମାଈ ସମ୍ବର ତାକୁ ଭଲ ପାଆନ୍ତି କିନ୍ତୁ କେବେ କେହି ହେଲେ ତାକୁ ପ୍ରେମ ନିବେଦନ କରିବାକୁ ସାହସ କରନ୍ତି ନାହିଁ । ଦିନେ ଅନ୍ୟ ଏକ ଦଳର ଗୋଟିଏ ହୃଷ୍ଟପୁଷ୍ଟ ମାଈ ସମ୍ବର

ଏହାଙ୍କୁ ଦେଖି ପ୍ରେମରେ ପଡ଼ଯାଏ । ସେ ତାର ସହିତ ମିତ୍ରତା ଜନ୍ମାଇବା ପାଇଁ ତାର ଦଳ ଛାଡ଼ି ଆସି ଏହି ଦଳରେ ମିଶିଯାଏ ଏବଂ ଏହି ହୃଷ୍ଟପୁଷ୍ଟ ସମ୍ବର ବଳରାଜର ପଛେ ପଛେ ଘାସ ଚରିବାକୁ ଲାଗେ ।

ବସନ୍ତ ଋତୁର ଆଗମନ ହେଉ ପୃଥିବୀ ଫଳ ଫୁଲରେ ଭରି ଯାଇଥାଏ । ପୃଥିବୀ ଧୀରେ ଧୀରେ ଗରମ ହେବାକୁ ଲାଗିଥାଏ । ଘାସ ଆଉ ଜଳର ଅଭାବରେ ସମ୍ବରମାନେ ସକାଳ ସନ୍ଧ୍ୟାରେ ଯାଇ ନଦୀ କୂଳରେ ଜମା ହୁଅନ୍ତି । ସମ୍ବର, ହରିଣ, କଥାଡ଼, ମୃଗମାନଙ୍କ ଭିଡ଼ ହୋଇଥାଏ ଏହି ନଦୀକୂଳରେ । ପଶୁମାନଙ୍କ ଦେହର ଗନ୍ଧରେ ଏହି ଅଞ୍ଚଳ ପୁରି ଉଠେ । ବନଯାକ ଚରା ବୁଲା କଲା ପରେ ବଳରାଜ ମୁହଁ ଉଠାଇ ଦେଖେ । ତାର ଦଳର ସମସ୍ତ ସମ୍ବର ନଦୀକଳକୁ ଚାଲି ଯାଇଥାନ୍ତି ଜଳ ପିଇବା ଆଶାରେ । ସେ ଅନେକ ଥର ମନା କରିଛି ସମସ୍ତଙ୍କୁ ଏକା ଥରକେ ଜଳ ପାନ କରି ନଦୀ କୂଳରେ ରହିବା ପାଇଁ । ଏହି ନଦୀ କୂଳରେ ଏହି ବନରେ ସିଂହ, ବାଘ ସବୁ ଭଲରୂପେ ଶିକାର ପାଉଥାନ୍ତି । ତେଣୁ ନଦୀ କୂଳରେ ରହିବା ଦ୍ୱାରା ପ୍ରତ୍ୟହ ଗୋଟାଏ ଦୁଇଟା ସମ୍ବର ଏମାନଙ୍କ ଶିକାର ହୋଇଥାନ୍ତି ।

ତାର ଇତସ୍ତତଃ ଭାବ ଦେଖି ମାଈ ସମ୍ବର ତାକୁ ନମସ୍କାର ଜଣାଇ କହେ 'ହେ ସୁନ୍ଦର ଯୁବକ ! ତୁମର ରୂପ ଆଉ ବୀରତାର କାହାଣୀ ମୁଁ ସବୁଦିନେ ଶୁଣି ଆସୁଛି । ଆଜି ତୁମକୁ ଦେଖି ତୁମ ପ୍ରତି ଆକର୍ଷିତ ହୋଇ ଚାଲି ଆସିଲି । ଆଜି ନିକଟରୁ ତୁମକୁ ଦେଖି ଆନନ୍ଦିତ ହେଲି । ବଳରାଜ ହସି ହସି ତାକୁ କହେ "ମୁଁ ଜାଣେ ତୁମେ ହେଉଛ ଅନ୍ୟ ଦଳର ସମ୍ବରରାଜ 'ଋତୁସେନ'ଙ୍କ କନ୍ୟା । ସେ ତାଙ୍କ ବୟସରେ ଅତି ବଳବାନ ଥିଲେ । ତାଙ୍କ ଦଳକୁ ସେ

ଅଜଣା ମଣିଷ, ବାଘ, ଭାଲୁ ଏହି ସମସ୍ତଙ୍କଠୁ ରକ୍ଷା କରିବାକୁ ସମର୍ଥ ଥିଲେ । ତୁମେ ତାଙ୍କର ସୁନ୍ଦରୀ ଆଉ ସୁବର୍ଣ୍ଣ କନ୍ୟା । ତୁମ ନାମ ବୋଧ ହୁଏ ଶାନ୍ତା । ତୁମର ଏହି ବଡ ବଡ ଆଖି ଦୁଇଟି । ତୁମ ରୂପର କାହାଣୀ କହୁ ଦେଉଛି ।”

ଟିକିଏ ସାହସ ପାଇ ରାଜକୁମାରୀ ଶାନ୍ତା ବନରାଜଙ୍କ ନିକଟକୁ ଧୀରେ ଧୀରେ ଆସି ତାଙ୍କୁ ଛୁଇଁବାକୁ ଲାଗେ । ଏହି ସୁନ୍ଦରୀଠୁ ପ୍ରଥମ କରି ବନରାଜ ସ୍ନେହ ପାଏ । ସେ କହେ “ହେ ରାଜ ଜେମା । ତୁମେ ତୁମ ପିତାଙ୍କ ଅନୁମତି ନେଇ ଆସ ଆମେ ଏଠାରେ ବିବାହ କରି ଆନନ୍ଦରେ ରହିବା ।” ଏହା ଶୁଣି ଶାନ୍ତା କହେ “ଏହା ଅସମ୍ଭବ । ଆମ ଦଳର ପ୍ରଥା ଅନୁଯାୟୀ ଯେଉଁ ବର ଆମର ତିନି ସେନାପତିଙ୍କୁ ପରାସ୍ତ କରି ଦେଇ ପାରିବ ସିଏ ହିଁ ମୋତେ ବିବାହ କରି ପାରିବ । କିନ୍ତୁ ଏହା ସହଜ । କାରଣ ଏହି ତିନି ସେନାପତି ବର୍ତ୍ତମାନ ବୃଦ୍ଧ । କେବଳ ସେମାନେ ବୁଦ୍ଧି ବଳରେ ତୁମକୁ ପରାସ୍ତ କରିବେ । ତୁମେ କିଛି ସମୟ ମୋର ସହିତ ଯୁଦ୍ଧ କର । ତାହା ହେଲେ ତୁମେ ସେମାନଙ୍କୁ ପରାସ୍ତ କରିପାରିବ ।

ଶାନ୍ତା ସହ ବନରାଜର ଯୁଦ୍ଧ ହୁଏ । କିନ୍ତୁ ବନରାଜ ଶାନ୍ତାଙ୍କୁ ପରାସ୍ତ କରି ପାରେ ନା । ଯେତେ ଚେଷ୍ଟା କଲେ ମଧ୍ୟ ଶାନ୍ତା ହାଲିଆ ହୁଏ ନା । ଶେଷରେ ସେ ହାଲିଆ ହୁଏ । ଶାନ୍ତା ହସି ହସି କହେ “ତୁମେ ନିଜ ମନର ସମସ୍ତ ଶକ୍ତି ସଞ୍ଚୟ କରି ଆକ୍ରମଣ-କାରୀର ମୁକାବିଲା କର । ତୁମର ଖୁରା ଗୁଡ଼କୁ ଶକ୍ତ ଭାବରେ ଭୂମି ଉପରେ ରଖିବାକୁ ଚେଷ୍ଟା କର । ତୁମେ ପ୍ରଥମେ ଆକ୍ରମଣ ନ କରି ପ୍ରତିରୋଧ କର । ଯେତେବେଳେ ଶତ୍ରୁ ଦୁର୍ବଳ ହୋଇ ଯିବାର

ଜଣା ପଡ଼ିବ ସେତେବେଳେ ସମସ୍ତ ଶକ୍ତି ଲଗାଇ ତାକୁ ଆକ୍ରମଣ କର । ସେ ଯେପରି ଏହି ଆକ୍ରମଣ ପ୍ରତି ସଜାଗ ନ ଥିବ ସେଥି ପ୍ରତି ଦୃଷ୍ଟି ଦେବ ।

ଏହା କହି ଶାନ୍ତା ତାଙ୍କୁ ଆକ୍ରମଣ କରିବାକୁ କହେ । ସେ ଆକ୍ରମଣ କରି କରି ହାଲିଆ ହେବା ପରେ ଶାନ୍ତା ତାଙ୍କୁ ଆକ୍ରମଣ କରେ । ଏପରି ଭାବରେ ସେ ଶାନ୍ତା ମଲ୍ଲ ଯୁଦ୍ଧ କରେ । ତାର ମନ ବଳ ବଢ଼ାଇବାରେ ଲାଗିଥାଏ । ହେଲେ ହଠାତ୍ ଶାନ୍ତାର ଆକ୍ରମଣକୁ ପ୍ରତିହତ କରିପାରେ ବଳରାଜ । ଏପରି ଗୋଟିଏ ମାସ ବିତିଯାଏ । ଗ୍ରୀଷ୍ମ ଋତୁ ତାର ଯୁବକ ସମସ୍ତରେ ପହଞ୍ଚେ । ତାର ଦଳର ସମ୍ବରମାନେ ମଧ୍ୟ ସେହି ନଦୀ କୂଳକୁ ଆସନ୍ତି । ଶାନ୍ତା ତାର ପିତା ଓ ସେନାପତି ମାନଙ୍କୁ ଦେଖାଇ ଦେଇ କହେ "ବଳରାଜ ! ବର୍ତ୍ତମାନ ଯାଇ ରାଜାଙ୍କୁ ଏବଂ ସେନାପତି ମାନଙ୍କୁ ନମସ୍କାର ଜଣାଇ ତୁମ ମନୋଭାବ ପ୍ରକାଶ କର ।"

ବଳରାଜ ଧୀରେ ଧୀରେ ଯାଇ ପହଞ୍ଚେ ସମ୍ବର ରାଜାଙ୍କ ନିକଟରେ । ତାଙ୍କୁ ନମସ୍କାର ଜଣାଇ କହେ "ମୁଁ ଗୋଟିଏ ଶ୍ରେଷ୍ଠ ସମ୍ବର ଦଳର ରାଜା । ମୋର ପିତା ବାଘ ହାବୁଡ଼ରେ ପଡ଼ି ଅକାଳ ମୃତ୍ୟୁ ବରଣ କରିଛନ୍ତି । ମୁଁ ବାଧ୍ୟ ହୋଇ ଅଳ୍ପ ବୟସରେ ଏହି ଶ୍ରେଷ୍ଠ ଦଳର ସରଦାର ହୋଇଛି । ମୋର ଦଳରେ ଚାରି ଶହ ପର୍ଯ୍ୟନ୍ତ ସମ୍ବର ଅଛନ୍ତି । ଥରେ ବଣରେ ବୁଲୁ ବୁଲୁ ତୁମର କନ୍ୟା ଶାନ୍ତାକୁ ଦେଖି ମୁଁ ମୁଗ୍ଧ ହୋଇ ପ୍ରଣୟ ଭିକ୍ଷା କରେ । ସେ କହନ୍ତି ଆପଣଙ୍କୁ କହିବାକୁ ଏବଂ ଆପଣଙ୍କ ଅନୁମତି ନେବା ସକାଶେ । ହସି ହସି ସମ୍ବର ରାଜା ସେ ଆଦେଶ ଦିଅନ୍ତି ସେନାପତି ତିନଙ୍କୁ ।

ଜଣ ଜଣ କରି ତିନି ଜଣ ସେନାପତି ପରାସ୍ତ ହେବା ପରେ ହଠାତ୍ ଗୋଟାଏ ଶକ୍ତିଶାଳୀ ମଇଁଷି ଧାଇଁ ଆସି ଆକ୍ରମଣ କଲା । ରାଜାଙ୍କ । ରଜା ତା'ର ସହିତ ପ୍ରାଣ ପଣେ ଯୁଦ୍ଧ କରନ୍ତି । ଏହି ସମୟରେ ବଳରାଜ ଅଳ୍ପ ଦୂର ଯାଇ ଧାଇଁ ଆସି ମଇଁଷିର ପଛପଟୁ ଏପରି ଏକ ମୁଣ୍ଡିଆ ମାରେ ଯେ ମଇଁଷି ସମ୍ବର ରାଜାଙ୍କୁ ଛାଡ଼ି ଦିବାକୁ ବାଧ୍ୟ ହୁଏ । ସମ୍ବରରାଜ ତିନି ସେନାପତିଙ୍କୁ ତିନି ପଟୁ ମଇଁଷିକୁ ଆକ୍ରମଣର ଆଦେଶ ଦିଅନ୍ତି । ମଇଁଷି ବୁଲିଲା ବେଳକୁ ବଳରାଜ ଦୂରକୁ ଚାଲିଯାଇ ଧାଇଁ ଆସି ପୁଣି ପଛ ପଟୁ ଆକ୍ରମଣ କରେ । ଏହି ପରି ଆକ୍ରମଣର ସମ୍ମୁଖୀନ ହୋଇ ଶେଷରେ ମଇଁଷି ଭୟ ପାଇ ପଳାଇ ଯାଏ ।

ସମ୍ବର ରାଜ ଆନନ୍ଦିତ ହୋଇ ନିଜ ଝିଅ ଶାନ୍ତାର ବିବାହ କରାଇ ଦିଅନ୍ତି ବଳରାଜର ସହ । ବଳରାଜ ଶାନ୍ତା ସହ ଦଳକୁ ଫେରି ଆସନ୍ତି । ସଦା ସର୍ବଦା ଶାନ୍ତା ନିଜର ସ୍ୱାମୀ ନିକଟରେ ଥାଏ । କୌଣସି ନାରୀ ସମ୍ବରକୁ ଆଉ ତା'ର ପାଖ ଛଡ଼େ ପୁରଇ ଦିଏନି । ଅନ୍ୟ ସମ୍ବରମାନେ ଏହା ଦେଖି ହସି ହସି କହନ୍ତି ବଳପତି ବର୍ତ୍ତମାନ ଏକପତ୍ନୀବ୍ରତ ଧର୍ମ ଗ୍ରହଣ କଲେଣି । ଏହି ଦଳର ସଂସ୍ପର୍ଶେ ବିବାହ କରି ଏକ ପତ୍ନୀ ସହ ଚରି ବୁଲି ବୁଲନ୍ତି । ଏହି ଅଞ୍ଚଳକୁ ଯେଉଁ ଶିକାରୀ ମାନେ ଉଠନ୍ତି ସେ ଏହି ଦମ୍ପତିଙ୍କୁ ଦେଖି କେବେ ଶିକାର କରନ୍ତି ନାହିଁ । କାରଣ ଏମାନଙ୍କ ପ୍ରେମ ଏତେ ଅଧିକ ଯେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରୁ ଯଦି କେହି ଜଣେ ମରିଯାଏ ତାହା ହେଲେ ଅନ୍ୟଟି ମଧ୍ୟ ଝୁରି ଝୁରି ମରିଯିବାର ଆଶଙ୍କା କରାଯାଉଛି ।

*✕*

# ଅମାନିଆ ସାପ ଛୁଆ

ରାତିର ଅନ୍ଧକାର ମଧ୍ୟରେ ବର ଗଛ ଉପରେ ବସି ବାଦୁଡ଼ି ତା'ର କାହାଣୀ କହିବାକୁ ଯାଇ କହେ "ଏହା ଏକ ଅଦ୍ଭୁତ ପ୍ରେମ ଆଉ ତ୍ୟାଗର କାହାଣୀ । ପଶୁ ଜଗତରେ ମଧ୍ୟ ଏପରି ଅଦ୍ଭୁତ ଜୀବ ଅଛନ୍ତି ତାହା କଳ୍ପନା ବାହାରେ ।

ତୁମେ ଇଞ୍ଜିନିୟରିଂ ସ୍କୁଲ ଦେଖିଥିବ । ଖୋଣ୍ଡାପିଙ୍ଗିର ଅଳ୍ପ ଦୂରରେ ଏହା ଅବସ୍ଥିତ । ଏହି ସ୍କୁଲକୁ ଲାଗି ଏକ ବଗଠ ପଡ଼ିଆ, ଏହି ସ୍କୁଲର ପଛପଟେ ଅବସ୍ଥିତ । ଏହି ପଡ଼ିଆର ପୂର୍ବ ପଟେ ଆଇ. ଟି. ଆଇ. ସ୍କୁଲ । ଉତ୍ତର ପଟେ ମାନସିଙ୍କ ଘାଇ ଓ ବିଦ୍ୟୁତ୍‌ପୁରୁଷଙ୍କ ଅନେକ ଘର । ପଶ୍ଚିମ ପଟେ ବିଦ୍ୟୁତପ୍ରସ୍ଥ କଲୋନୀ ଓ ଈଶ୍ୱର ମନ୍ଦିର । ଦକ୍ଷିଣ ପଟେ ପିଚ ରାସ୍ତା । ଏହି ପଡ଼ିଆଟିର ଗୋଟାଏ ଅଂଶରେ ଖେଳ ପଡ଼ିଆ । ବିଦ୍ୟୁତ୍‌ପୁରୀକୁ ଲାଗି ଛାତ୍ର-ମାନଙ୍କ ସକାଶେ ବୋଡିଙ୍ଗ । ଏହି ବୋଡ଼ିଙ୍ଗକୁ ଲାଗି ବଗାଠ ଟେଲ ପଡ଼ିଆ ।

ଏହି ଖାଲି ପଡ଼ିଆରେ ଅନେକ ବିଳା ଅଛି । କଣ୍ଟା ଗଛମାନ ଉପରକୁ ମୁଣ୍ଡଟେକି ଠିଆ ହୋଇଛନ୍ତି । କେବଳ ଗୋଟାଏ ତ ଦାଟଲ ରାସ୍ତା ଲମ୍ବି ଯାଇଛି ଭବନପୁର ପର୍ଯ୍ୟନ୍ତ ।

ଏହି ବିଳାଗୁଡ଼ିକରେ ଅନେକ ନାଗ ସାପ ବାସ କରନ୍ତି । ରାତି ପାହିଲେ ଏମାନେ ନିଜ ନିଜ ବିଳାରୁ ବାହାରି ଶିକାର କରନ୍ତି । ଏମାନଙ୍କ ମଧ୍ୟରେ ଗୋଟିଏ ନାଗୁଣୀ ଏବଂ ତା'ର ଅନେକ

ଗୁଡ଼ିଏ ଛୁଆ ଥାନ୍ତି । ମାଆ ଖାଦ୍ୟ ଆଣି ଏମାନଙ୍କୁ ଦିଏ । ଏହି ନାଗୁଣୀ ନିକଟସ୍ଥ ଶିବ ମନ୍ଦିରକୁ ଯିବା ଆସିବା କରେ । ତାର ସହ ଏକ ନାଗ ମଧ୍ୟ ବାସ କରେ । ନାଗ ଅନେକ ଦୂର ପର୍ଯ୍ୟନ୍ତ ବୁଲି ବୁଲି କରେ । ନାଗୁଣୀ ଆଉ ଛୁଆ ମାନଙ୍କର ଯତ୍ନ ନିଏ । ଏମାନେ ପଦାକୁ ବୁଲି ବାହାରିବାକୁ ଚାହିଁଲେ ସେ କହେ "ଆମେ ସମସ୍ତେ ଦେଖିଲ ଭଳି ପଦାରେ ବୁଲିବା ଅନୁଚିତ ।

ଆମେ ଆମର ଆତ୍ମରକ୍ଷା ପାଇଁ ମଣିଷକୁ ଆକ୍ରମଣ କରି ଥାଉ, କିନ୍ତୁ ମଣିଷ ଓଲଟା ଭାବେ । ସେମାନେ ଭାବନ୍ତି ଆମରି ସ୍ୱଭାବ ହିଁ ଆକ୍ରମଣ କରି ମଣିଷକୁ ମାରି ପକାଇବା । ତେଣୁ ସେମାନେ ନିସନ୍ଦେହ ଭାବରେ ଆମକୁ ମାରି ପକାନ୍ତି । କୌଶଳରେ ଧରିନେଇ ଆମର ବିଷ ଦାନ୍ତ ଭାଙ୍ଗି ଦେଇ ଆମକୁ ବନ୍ଦୀ କରି ରଖନ୍ତି । ଥରେ ଏହି ମଣିଷ ହାତରେ ବନ୍ଦୀ ହେଲେ ଆମେ ବଞ୍ଚିବା କଷ୍ଟକର । ତେଣୁ ମଣିଷର ହାବୁଡ଼ରେ ପଡ଼ିବା ହିଁ ଅନୁଚିତ । କିନ୍ତୁ ଛୁଆମାନଙ୍କୁ ଏହି କଥା ଭଲ ଲାଗେନି । ସେମାନେ ମା ବାପା ନ ଥିବା ବେଳେ ଲୁଚି ଲୁଚି ଗାତରୁ ବାହାରି ପଡ଼ନ୍ତି । ଧୀରେ ଧୀରେ ଯାଇ ପହଞ୍ଚନ୍ତି ମନ୍ଦିର ସମ୍ମୁଖରେ । ମନ୍ଦିର ମଧ୍ୟରେ ଥିବା ପାଦୁକ କୁଣ୍ଡ ପାଖରେ ରହିବାକୁ ତାଙ୍କୁ ଭଲ ଲାଗିଲା । ଗ୍ରୀଷ୍ମ ଦିନେ ଏହି ଜାଗାଟି ଥଣ୍ଡା ଲାଗେ । ଏହା ଛଡ଼ା ଏମାନେ ଅନ୍ୟାନ୍ୟ ସ୍ଥାନ ବୁଲନ୍ତି ।

ଦିନକର କଥା । ବ୍ରହ୍ମପୁରଠୁ ଭୁବନେଶ୍ୱର ପର୍ଯ୍ୟନ୍ତ ଲମ୍ବି ଯାଇଥିବା ରାସ୍ତାଟି ମରାମତି ହେବାର ବ୍ୟବସ୍ଥା କରାଯାଉ ଥାଏ । ସେଥିପାଇଁ ଅନେକ ଗୁଡ଼ିଏ ଆଲକତରା ଡବା ଆଣି ଏହି

ସ୍କୁଲର ପଡ଼ିଆରେ ରଖା ଯାଇଥାଏ । ଦିନେ ଗୋଟିଏ ପିଚ୍ ଡ଼ବା ତଳେ ପଡ଼ିଯାଏ । ଫାଟି ଯାଇ ତାରୁ ଗୁଡ଼ାକ ପଡ଼ିଆରେ ବିଛେଇ ହୋଇ ପଡ଼ିଯାଏ । କଳା କଳା ପିଚ୍ ଗୁଡ଼ିକ ଉପରେ ଯିଏ ଯାଏ ଲାଗି ହୋଇ ରହିଯାଏ ।

ଦିନେ ଏଣ୍ଟି ସାପ ଛୁଆ ଗୁଡ଼ିକ ବାହାରିଲେ ବୁଲିବାକୁ । ଆନନ୍ଦରେ ଖେଳ ଖେଳ ଫଣା ଟେକ ସେମାନେ ଘୂରି ବୁଲନ୍ତି ପଡ଼ିଆରେ । ଦେଖୁ ଦେଖୁ ଗୋଟିଏ ସାପ ଛୁଆ ଖେଳ ଖେଳ ଯାଇ ପହଞ୍ଚିଲା ଆଲକତରା ପଡ଼ିବା ସ୍ଥାନରେ । ତାର ଦେହଟି ଯାଇ ପହଞ୍ଚିଲା ଆଲକତରାରେ । ତରଳ ଆଲକତରା ଉପରେ ସାପର ଶରୀରଟା ଲାଗି ହୋଇ ରହିଯାଏ । ସେ କାନ୍ଦି କାନ୍ଦି କହିଲା ଭାଇ ଓ ଭଉଣୀମାନେ, ମୋତେ ରକ୍ଷା କର । ମୁଁ ଏହି ତରଳ ଆଲକତରାରେ ପଡ଼ିବାରୁ ଶରୀରଟି ଅଚଳ ହୋଇ ଯାଉଛି ।

ସମସ୍ତଙ୍କ ଖେଳ ବନ୍ଦ ହୋଇ ଗଲା । ସମସ୍ତେ ଖୋଜି ଖୋଜି ଯାଇ ମାଆ ବାପଙ୍କୁ ଏହି କଥା କହିଲେ । ମାଆ ଧାଇଁ ଆସି ଲାଞ୍ଜ ବଢାଇ ନାଗ ଛୁଆ ଚରଣକୁ ଧରି ଆଣିବାକୁ ଚେଷ୍ଟା କଲେ କିନ୍ତୁ ପାରିଲନା । ନାଗଛୁଆ ଚରଣ ସେହିଠାରେ ମୃତ୍ୟୁ ମୁଖରେ ପଡ଼େ । ଲୋକେ ଦେଖନ୍ତି ଏହି ଠାରେ ପଡ଼ିଥିବା ତାରୁ ଉପରେ ଗୋଟିଏ ସାପ ଛୁଆ ଦୁଇ ତିନୋଟି କୁକୁର ଛୁଆ ଗୋଟିଏ ବାଛୁରି ପିଲା ଲାଗି ରହିଛନ୍ତି । ଯେ କୌଣସି ମତେ ବାଛୁରୀଟିକୁ ବାହାର କରାଯାଏ ।

ସେହି ଦିନଠୁ ସାପ ଛୁଆମାନେ ସତର୍କ ହୋଇ ଉଠିଛନ୍ତି । ବର୍ତ୍ତମାନ ସେମାନେ ସନ୍ତର୍କତାର ସହ ବନ୍ଧ୍ୟତପସ୍ୱୀର ଘର ସାମନାରେ ଥିବା ଫୁଲ ବଗିଚାରେ ଘୂରି ବୁଲୁଛନ୍ତି । ତାଙ୍କୁ ଦେଖି ସମସ୍ତେ ଭୟରେ ଶିହରି ଉଠନ୍ତି ।



# ପୂଜକ

ଗୋଟି କାହାଣୀ ଶୁଣାଇବାକୁ ଯାଇ ଭକ୍ତକ କହିଲ "ଆଜକୁ ଅନେକ ଦିନର କଥା । ମୁଁ ସେହି ସମୟରେ ଶ୍ରେଷ୍ଠ ଥିଲ । ମା ବାପାଙ୍କ ପାଖରେ ମୁଁ ରହୁଥିଲ । ସେହି ସ୍ଥାନଟି ଅତ୍ୟନ୍ତ ମନୋରମ । ଅନେକ ବୃକ୍ଷ ଦ୍ୱାରା ବେଷ୍ଟିତ ଏହି ପୁଷ୍କରିଣୀଟି । ଶାଳ, ପିଆଶାଳ, ଜାମୁ, ହଳଦ ପ୍ରଭୃତି ବୃକ୍ଷ ମାନଙ୍କ ଦ୍ୱାରା ଏହାର ଶୋଭା ବର୍ଦ୍ଧିତ ହେଉଅଛି । ପାଖରେ ଗୋଟାଏ ଶବରପଲ୍ଲୀ । ଏହି ପୋଖରୀ ହୁଡାରେ ଶବରଙ୍କୁ ଦେଖେ ।

ଅନେକ ଦିନ ହେଲା ଏହି ଗ୍ରାମର ଅଳ୍ପ ଦୂରରେ ଗୋଟିଏ ଶିବ ମନ୍ଦିର ଗଢିଉଠିଛି । ଏହି ଶିବ ମନ୍ଦିରରେ ଜଣେ ପୂଜକ ନିଜର ଛୁଆ ପିଲା ଧରି ଅଛନ୍ତି । ସେ ଦେବତା ପୂଜନ ପରେ ଗମ୍ଭୀର ହୋଇଯାନ୍ତି । ଦରକାର ପଡିଲେ କିଛି କଥାବାର୍ତ୍ତା କରନ୍ତି । ଅନ୍ୟ ସମୟରେ ତୁନି ହୋଇ ନିଜ କାର୍ଯ୍ୟରେ ମନ ଦିଅନ୍ତି । ତାଙ୍କର ଅସାଧାରଣ ପାଣ୍ଡିତ୍ୟ ପ୍ରାୟ ସମସ୍ତଙ୍କୁ ମୁଗ୍ଧ କରି ଦେଇଥାଏ । ସେ ମହାଭାରତ, ରାମାୟଣ ଆଉ ଭାଗବତ ଏପରି

ପ୍ରାଞ୍ଜଳ ଭାବରେ ଲୋକଙ୍କୁ ବୁଝାଉଥାନ୍ତି ଯେ ସମସ୍ତେ ସ୍ତବ୍ଧ ହୋଇ ତାଙ୍କର କଥା ଶୁଣୁଥାନ୍ତି ।

ନିକଟବର୍ତ୍ତୀ ସହରର ଝିଅ ହେଉଛି ବେଦମଣି । ବେଦମଣି ରୂପବତୀ ଏବଂ ସୁନ୍ଦରୀ । ଶରୀରରେ ଯୌବନର ପରଶ । ରୁଚି ସମ୍ପନ୍ନ ପୋଷାକ ପରିଚ୍ଛଦ । ମୁଣ୍ଡରେ ସଦ୍ୟ ପ୍ରସ୍ଫୁଟିତ ଗୋଲାପ ଫୁଲଟିଏ ଲଗାଇବାକୁ ସେ ଭୁଲି ନ ଥାଏ । ସେ କଲେଜରୁ ନୂଆଁ ନୂଆଁ କରି ବି. ଏ. ପାଶ ହୋଇ ଆସିଥାଏ ଏହି ଗାଁକୁ । ସେ ବାପା ମାଆଙ୍କଠୁ ନିଜର ଜେଜେଙ୍କ ଅନୁପମଙ୍କ ବିଷୟରେ ଅନେକ କଥା ଶୁଣିଥାଏ । ଅନୁପମ ଏକ ସୁନ୍ଦର, ସୁଠାମ ଏବଂ ବଳବାନ ଯୁବକ । କଲେଜରେ ସେ ଶିକ୍ଷକତା କରୁଥାନ୍ତି । ସେ ଇଂରେଜୀ ସାହିତ୍ୟରେ ଡ଼. "ଫିଲ୍ ପାଇ କଟକ ରେଭେନ୍‌ସା କଲେଜରେ ରିଡ଼ାର ପୋଷ୍ଟିଙ୍ଗ୍ ପାଇଥାନ୍ତି ।

ତାଙ୍କର ବହୁତ ଗୁଡ଼ିଏ ଭଲ ଗୁଣ ଯୋଗୁଁ ସେ ଛାତ୍ରୀ ମାନଙ୍କର ପ୍ରିୟ ପାତ୍ର ହୋଇଥାନ୍ତି । କିନ୍ତୁ ତାଙ୍କ ଜୀବନରେ ଝଡ଼ ଆସେ । ସେହି ଝଡ଼ ଦେଖା ଦେଉଛନ୍ତି ତାଙ୍କର ବନ୍ଧୁ ଭଉଣୀ ମୃତ୍ତ୍ତିମଣି । ସୁନ୍ଦରୀ ରୂପବତୀ ବହୁତ ଚେଷ୍ଟା କରେ ଅନୁପମଙ୍କୁ ନିଜ ପ୍ରେମ ଜାଲରେ ଛନ୍ଦି ଦେବାକୁ । କିନ୍ତୁ କୌଣସି ମତେ ସେ ଅନୁପମଙ୍କୁ ନିଜ କବଳରେ ନ ପକାଇ ପାରି ତାଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ସେ ଅନ୍ୟ ଏକ ଯୁବକଙ୍କୁ ଭଲ ପାଇବାର ଛଳନା କରେ । କିନ୍ତୁ ଏହି ଖେଳରେ ସେ ହାରିଯାଏ । ବଦନାମ ତାକୁ ଅନୁମନକ ବଳାତ୍କାର କରି ବସେ । ଦୁଃଖ ଆଉ ନୈରାଶ୍ୟରେ ସେ ଭାଙ୍ଗି ପଡ଼େ ।

ଏହି ଖବର ପାଇ ଆଗେଇ ଆସନ୍ତି ଅନୁପମ । ସେ ବିବାହ କରନ୍ତି ଋତୁମଞ୍ଜରୀ ସହ । କିନ୍ତୁ ତାଙ୍କର ଦାମ୍ପତ୍ୟ ଜୀବନ ହିଁ କିଛି ନ ଥିଲା କହିଲେ ଚଳେ ।

ସେ କେବେ ହେଲେ ଋତୁମଞ୍ଜରୀ ସହ କଥା ବି ହେଉ ନ ଥା'ନ୍ତି । ସଦାସର୍ବଦା ମୂକ ଭଳି ରହୁଥାନ୍ତି । ଯାହା ଦରକାର ପଡ଼ୁଥାଏ ସେ ସବୁ ଆଣି ଦେଇ ଯାଆନ୍ତି ଋତୁମଞ୍ଜରୀଙ୍କୁ । ସମୟାନୁସାରେ ଗର୍ଭବତୀ ଋତୁମଞ୍ଜରୀ ଏକାଥରକେ ଦୁଇଟି ସନ୍ତାନ ଜନ୍ମ କରନ୍ତି । କିନ୍ତୁ ସେ ବଞ୍ଚି ପାରନ୍ତି ନାହିଁ ।

ସମାଜର ଉଚ୍ଛନ୍ନସ୍ୟ ସହ୍ୟ କରି ନ ପାରି ଗୃହତ୍ୟାଗ କରି ଅନୁପମ ଚାଲିଆସନ୍ତି ପୂଜକ ରୂପେ ଏହି ଶିବ ମନ୍ଦିରକୁ । ସେହି ଦିନୁ ସେ ନିଜର ଜୀବନ କଥା କାହାରିକୁ କହି ନାହାନ୍ତି । ସଦା ସର୍ବଦା ନିଜ କାର୍ଯ୍ୟରେ ବ୍ୟସ୍ତ ରହିବାକୁ ଚେଷ୍ଟା କରନ୍ତି ।

ଏହି ମହାନ୍ ତ୍ୟାଗୀ ପୁରୁଷଙ୍କୁ ଦେଖି ଦେବଦତ୍ତଙ୍କର ମନ କାନ୍ଦି ଉଠେ । ପଚିଶ ବର୍ଷର ଯୁବକ ଅନୁପମ । ସେ କିପରି ଗୋଟିଏ ନାରୀର ସମ୍ମାନ ରକ୍ଷା କରିବାକୁ ଯାଇ ତିଳ ତିଳ ହୋଇ ନିଜକୁ ହତ୍ୟା କରିବାରେ ଲାଗିଛନ୍ତି ତାହା ଦେଖି ସେ ଦୁଃଖିତ ଏବଂ ଏହାର ପ୍ରାୟଶ୍ଚିତ୍ତ କରିବାକୁ ଶପଥ ନିଅନ୍ତି ।

ସେ ମନ୍ଦିରକୁ ଲାଗିଥିବା ଘରଟିରେ ପହଞ୍ଚି ଦେଖନ୍ତି ଅନୁପମ ଚାଲି ଯାଇଛନ୍ତି ମନ୍ଦିରକୁ ଲାଗି ରହିଥିବା ରୋଷେଇ ଶାଳକୁ । ଦୁଇଟି ଛୁଆ ଘର ଭିତରେ ବସି ଗୋଡ଼ ଝପର ଖେଳୁଥାନ୍ତି । ଦୁଇ ଜଣଙ୍କର

ବୟସ ପାଞ୍ଚ । ସେ ଦୁହେଁ ରୋଗ ଆଜ ସୁସ୍ଥ । "ତାହା ହେଲେ ଅନୁପମ ପରିଶ୍ରମ କରି ଏହି ଦୁଇ ଛୁଆଙ୍କୁ ସୁସ୍ଥ ସବଳ ରଖିଛନ୍ତି" ଭାବନ୍ତି ବେଦମଣି । ସେ ସଙ୍ଗରେ ଆଣିଥିବା ଖେଳନା ଗୁଡ଼ିକୁ ଛୁଆ ଦୁଇଟିକୁ ଦେଇ ଘର ନିର୍ମଳ କରିବାକୁ ଲାଗନ୍ତି । ଭଲରୂପେ ଘରର ଜିନିଷ ଧୋଇ ନିର୍ମଳ କରି ଦିଅନ୍ତି । ଲୁଗା ପଟା ସଫା କରିବାରେ ଲାଗି ପଡ଼ନ୍ତି । ନିଜ ସଙ୍ଗରେ ଆଣିଥିବା ସର୍ଫରେ ଲୁଗା ବତୁରାଇ ପୋଖରୀକୁ ନେଇଯାନ୍ତି । ପିଲା ଦୁଇଟିଙ୍କ ଗୁଡ଼ାଏ ଜାମା, ପେଣ୍ଟ ଏବଂ ଅନୁପମଙ୍କ ଧୋତି ପଞ୍ଜାବୀ ସଫା କରି ଅଗଣାରେ ଶୁଖାଇ ଦିଅନ୍ତି । ଏତେବେଳକୁ ଅନୁପମ 'ରବି ରବି' ଡ଼ାକି ଘରେ ପ୍ରବେଶ କରନ୍ତି ।

ହଠାତ୍ ଘରଟି ପରିଷ୍କାର ହୋଇଥିବା ଦେଖି ସେ ଆଶ୍ଚର୍ଯ୍ୟ ହୁଅନ୍ତି । ପରେ ପରେ ସେ ଦେଖି ନିଅନ୍ତି ବେଦମଣିଙ୍କୁ । ବେଦମଣି ତାଙ୍କୁ ନମସ୍କାର ଜଣାଇ କହନ୍ତି ଜ୍ୱାଇଁ ! ମୋତେ କଣ ଆପଣ ଚିହ୍ନି ପାରୁ ନାହାନ୍ତି ? ମୋତେ ଆପଣ ପାଞ୍ଚ ବର୍ଷ ତଳେ ଦେଖିଥିଲେ ତୁମର ଘରେ । ନାନୀଙ୍କ ବାହା ଘରକୁ ଯାଇ ମୁଁ ଗ୍ରୀଷ୍ମ ଛୁଟିରେ ମାସ ଖଣ୍ଡେ ରହି ଆସିଥିଲି ।" ହସି ଉଠିଲେ ଅନୁପମ ଏହା ଶୁଣି !

ନିଜ ସଙ୍ଗରେ ଆଣିଥିବା ପ୍ରସାଦ ସେ କଦଳୀ ପତ୍ରରେ ବାଢ଼ିବାକୁ ଉଦ୍ୟତ ହେବା ସମୟରେ ତାଙ୍କ ହାତରୁ ଛଡ଼ାଇ ନେଇ ବେଦମଣି ବାଢ଼ି ଦିଏ । ରବି, ଉଜଳ ଏବଂ ଅନୁପମଙ୍କ ସହ ସେ ମଧ୍ୟ ଖାଇ ବସେ । ଅନୁପମ ହସି ହସି କହନ୍ତି "ବେଦମଣି ! ଏତେ ଦିନ ପରେ ମୁଁ କିପରି ତୁମର ମନେ ପଡ଼ିଲି ? ଯାହା ହେଉ ତୁମର ଭଉଣୀଙ୍କ ଅମାନତ ମୁଁ ସାଇତି ରଖିଛି । ତୁମେ ଯେତେବେଳେ ଚାହିଁବ ନେଇ ପାରୁ ।

ହସି ଉଠେ ବେଦମଣି । "ତୁମଠାରୁ ମୁଁ କିଛି ଛଡ଼ାଇ ନେବାକୁ ଆସିନି ଅନୁପମ । ବରଂ ମୁଁ କିଛି ଦେବାକୁ ଆସିଛି । ମୁଁ ତୁମ ଶୁଷ୍କ ଜୀବନରେ ସରସତା ଭରି ଦେବି । ଏହି ଶବର ପଲ୍ଲୀରେ ମୁଁ ଶିକ୍ଷୟିତ୍ରୀ ଭାବେ ଚାକିରି ପାଇଛି । ତୁମ ଭଳି ବନ୍ଧୁ ଥାଉ ଥାଉ ମୁଁ କାହିଁକି ବା ଆଉ କେଉଁଠିକି ଯିବି ରହିବା ସକାଶେ । ଏଠାରେ ମୁଁ ସବୁଦିନ ପାଇଁ ରହିଯିବି, ତୁମ ସନ୍ତାନର ଯତ୍ନ ନେବି । ତୁମେ ମୋତେ ବିବାହ କର, ତୁମକୁ ମୁଁ ସମ୍ପୂର୍ଣ୍ଣ ଭାବେ ସୁଖ ଶାନ୍ତି ଦେଇ ପାରିବି । ଏ ଶରୀର ଆଉ ମନ ସବୁ ତୁମର ।"

ଅନୁପମ କହେ "ମୁଁ ଗରିବ । ତୁମର ଦରମା ମଧ୍ୟ କମ । ଆମର ଆଗରୁ ଦୁଇଟି ସନ୍ତାନ ଅଛନ୍ତି । ମୁଁ ଆଉ ସନ୍ତାନର ଜନକ ହେବାକୁ ଦରକାର କରେନି । "ବେଦମଣିର ମୁହଁରେ କ୍ଷୀଣ ହସ ଦେଖାଯାଏ, ମୁଁ ଆମର ବିବାହ ଆଗରୁ ହସପିଟାଲ ଯାଇ ଜନ୍ମ ନିରୋଧ ଅପରେସନ କରି ଦେବି । ବର୍ତ୍ତମାନ ମୋ ସହିତ ବିବାହ କରିବାକୁ ରାଜି ତ ?" ଏପରି ଏକ ତ୍ୟାଗମୟୀ ମହୀୟସୀ ନାରୀ ଦେଖି ମୁଁ ଆଶ୍ଚର୍ଯ୍ୟ ଚକିତ ହୋଇଗଲି ।



# ସିଂହୀର ଗର୍ବ

ଅନନ୍ତ ଆକାଶର ତଳେ ବର ଗଛଟି ତାର ଶତ ସହସ୍ର ପତ୍ରକୁ ନେଇ ଠିଆ ହୋଇଛି ଦେଉଳ ପୋଖରୀ ହୁଡାରେ । ଅନେକ ପକ୍ଷୀ ନିଜର ଡେଣା ଫଡ଼ ଫଡ଼ କରି ଦୂରରୁ ଆସି ଏହାର ଡାଳରେ ବସନ୍ତି କାହାଣୀ ଶୁଣିବାର ଆଶା ନେଇ । କାହାଣୀ ଆରମ୍ଭ କରିବାକୁ ଯାଇ ମାଛରଙ୍କା କହିବାକୁ ଲାଗିଲା "ଏକ ସୁନ୍ଦର ଝରଣା ବହି ଯାଉଛି ଆଠଗଡର ଜଙ୍ଗଲରେ । ଏହି ଝରଣାର ଦୁଇ ପାର୍ଶ୍ୱରେ ଅନେକ ଶାଳ ପିଆଶାଳ ବୃକ୍ଷ ଆକାଶକୁ ମୁଣ୍ଡ ଟେକି ଦଣ୍ଡାୟମାନ ହୋଇଛନ୍ତି । ଏହାର ଗୋଟିଏ ତଟରେ ଏକ ବିରାଟ ପାହାଡ଼ ଠିଆ ହୋଇଛି । ଏହି ପାହାଡର ଗୁମ୍ଫାରେ ଦୁଇଟି ସିଂହ ଅନେକ ଦିନରୁ ବସବାସ କରି ଆସୁଥାନ୍ତି । ଦୁହିଁଙ୍କ ମଧ୍ୟରେ ମିତ୍ରତା ଗଭୀରରୁ ଗଭୀରତମ ଅବସ୍ଥାରେ ଥାଏ ।

ଦୁହେଁ ସନ୍ଧ୍ୟା ସମୟରେ ଝରଣାର କୂଳରେ ବସି ସୂର୍ଯ୍ୟ ଅସ୍ତ ହେବାର ମଧୁର ଶୋଭା ଉପଭୋଗ କରୁଥାନ୍ତି । ପାଣି ପିଇବାକୁ ହରିଣ, ମୃଗ ଆସିଲେ ଦୁହେଁ ମିଳିମିଶି ଉଭୟ ପଟରୁ ଆକ୍ରମଣ କରି ଶିକାର କରନ୍ତି । ଦୁହେଁ ଆନନ୍ଦରେ ମିଳିମିଶି ଭୋଜନ କରି ସମୟ କଟାନ୍ତି ।

ଦିନକର କଥା । ଗୋଟିଏ ସିଂହୀ ଶୁଣି ପାରିଲା ଯେ ଏହି ଅଞ୍ଚଳର ଝରଣା କୂଳରେ ଦୁଇଟି ସିଂହ ବାସ କରୁଛନ୍ତି । ସେମାନଙ୍କ ମଧ୍ୟରେ ଅଗାଧ ପ୍ରେମ । ସେ କପରି ହେଉ ଏମାନଙ୍କ

ପ୍ରେମରେ ବ୍ୟାଘାତ ଆଣିବାକୁ ଇଚ୍ଛା କଲା । ସେ ତା ମାଆକୁ କହେ "ମାଆ ! ମୋର ବୟସ ହେଲଣି, ମୁଁ ସାଥୀ ଖୋଜିବାକୁ ବାହାରିଲି । ଝରଣା କୂଳରେ ଦୁଇ ବନ୍ଧୁ ରହୁଛନ୍ତି । ସେହି ଦୁହିଁଙ୍କ ମଧ୍ୟରେ କଳହ ଲଗାଇ ମୋତେ ଯିଏ ଅଧିକ ଭଲ ପାଇବ ତାକୁ ବିବାହ କରିବି ।" ମାଆ କୁହେ "ତୁମେ ବିବାହ କର ମନ ମୁତାବକ ସିଂହ ସହ, ଏଥିରେ ମୋର କିଛି ଆପତ୍ତି ନାହିଁ, କିନ୍ତୁ ଦୁଇ ବନ୍ଧୁଙ୍କ ମଧ୍ୟରେ କଜିଆ ଲଗାଇବା ଉଚିତ ନୁହେଁ । ତୁମେ ଦୁଇ ବନ୍ଧୁଙ୍କ ସହ ମିଳାମିଶା କର ଏବଂ ଯାହାକୁ ଭଲ ଲାଗିଲା ତାର ସହ ଜୀବନ ଯାପନ କର ଏହା ଉଚିତ ହେବ ।" କିନ୍ତୁ ଯୁବତୀ ସିଂହୀର ମନରେ ତ ମଜା ଦେଖିବା ଏବଂ କଳହ ଲଗାଇବାର ନିଶା ଲାଗିଥାଏ ।

ମାଁ ଝିଅଙ୍କ କଥୋପକଥନ ଶୁଣୁ ଥାଏ ଗୋଟିଏ ଶୃଗାଳ । ସେ ଧୀରେ ଧୀରେ ଆସି ଦୁଇ ବନ୍ଧୁଙ୍କୁ ଏହି ଖବର ଶୁଣାଇ ଦିଏ । ଦୁଇ ବନ୍ଧୁ ମନେ ମନେ ସ୍ଥିର କରନ୍ତି ସିଂହୀକୁ ଏପରି ଏକ ମଜା ଚଖେଇ ଦେବୁ ଯେ ସେ ଜୀବନଯାକ ମନେ ପକାଉଥିବ । ସେ ଦୁହେଁ ସିଂହୀର ବାଟ ଚାହିଁ ବସନ୍ତି । ସିଂହୀ ଧୀରେ ଧୀରେ ଆସି ନିଜର ସୌନ୍ଦର୍ଯ୍ୟ ଦେଖାଇବାକୁ ଚେଷ୍ଟା କରେ । ସେ ଦୁଇ ଥର ସେହି ରାସ୍ତାରେ ଯା 'ଆସ କରେ ଯେଉଁଠାରେ ଦୁଇ ବନ୍ଧୁ ବସିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା ଦୁଇ ବନ୍ଧୁ ତାକୁ ଅନାନ୍ତି ନାହିଁ ।

ସେ କଣ ବା କରନ୍ତା, ଧୀରେ ଧୀରେ ଚାଲିଯାଏ ବଣ ଭିତରକୁ । ଶେଷରେ ସେ ଜଣ ଜଣକୁ ଆଖି ଠାରି ଦାନ୍ତ ଲେସିଡ଼ ଡାକେ । ଦୁହେଁ ତ ସିଂହୀର କଥା ଜାଣିଥାନ୍ତି । ଏକାବେଳକେ ଦୁଇ ଜଣ ପାଖ ଯାଇ ପହଞ୍ଚନ୍ତି ତାର ନିକଟରେ । କୁମାରୀ ସିଂହୀ

ଅବାକ୍ ହୋଇ ରହିଯାଏ । ସେ କଣ ଆଉ କରନ୍ତା ଧୀରେ ଧୀରେ କହେ "କାଲିକ ମୋର ଜନ୍ମ ଦିନ । ଆପଣ ଦୁହିଁଙ୍କୁ ନିମନ୍ତ୍ରଣ ରହିଲା । ଦୁହେଁ ଆସିବ ।

କୁମାଷ୍ଟି ସିଂହ ଚାଲିଯାଏ । ଏ ଦୁହେଁ ବିଚାର କରନ୍ତି । ଏଥିରେ ଏହାର ନିଶ୍ଚୟ କିଛି ଦୁରଭିସନ୍ଧି ଥିବ । ତେଣୁ ଆମକୁ ଏହି ସ୍ଥାନ ଛାଡ଼ି ଚାଲିଯିବା ଉଚିତ । ଏହା ଭାବି ସେମାନେ ଝରଣା କୂଳେ କୂଳେ ଅନେକ ବାଟ ଆଗକୁ ଚାଲିଯାନ୍ତି ।

କୁମାଷ୍ଟି ବସି ବସି ସେମାନଙ୍କ ଅପେକ୍ଷା କରେ । ସମୟ ଗଡ଼ିଯାଏ କିନ୍ତୁ ଦୁଇ ବନ୍ଧୁ ଆସନ୍ତି ନାହିଁ । ମାଁ ଆଗରେ ସେ କାନ୍ଦିବାକୁ ଲାଗେ । ମାଁ ତାକୁ ପ୍ରବୋଧନା ଦେଇ କହନ୍ତି ତୁ ସେମାନଙ୍କ ବନ୍ଧୁତା ନଷ୍ଟ କରିବାକୁ ଚେଷ୍ଟା କଲୁ ତେଣୁ ସେ ଦୁହେଁ ତୋତେ ଛାଡ଼ି ଚାଲିଗଲେ । ବର୍ତ୍ତମାନ ତୁମେ ତାଙ୍କର କିଛି ଉପକାର କର ।

ଦିନେ ସିଂହୀ ଦେଖେ, ଗୋଟିଏ ସର୍କସ ଦଳ ଜନ୍ତୁ ଧରି ଯାଉଛନ୍ତି ଝରଣାର କୂଳେ କୂଳେ । ସେ ଅନୁମାନ କରି ନିଏ ଏମାନେ ସିଂହ ଦୁଇଟିକୁ ଧରିବାକୁ ଚେଷ୍ଟା କରୁଛନ୍ତି । ସେ ଜଙ୍ଗଲ ରାସ୍ତାରେ ଯାଇ ଦୁଇ ସିଂହଙ୍କୁ ଏହି ଖବର ଜଣାଏ । ସେ ଦୁହେଁ ସତ୍ୟତା ଜାଣିବା ସକାଶେ ସବୁବେଳେ ରହୁଥିବା ସ୍ଥାନରୁ ଦୂରେଇ ଯାଇ କୌଣସି ଏକ ଗୁମ୍ଫାରେ ରହି ବାହାରର ଦୃଶ୍ୟ ଦେଖନ୍ତି । ସତକୁ ସତ ସର୍କସ ଦଳ ତାଙ୍କୁ ଧରିବାକୁ ଜାଲ ପଞ୍ଜୁରୀ ଏବଂ ନାନା ପ୍ରକାର ଅସ୍ତ୍ର ଶସ୍ତ୍ର ଧରି ପହଞ୍ଚନ୍ତି । ସେମାନେ ଖୋଜି ଖୋଜି ସିଂହ ଦୁହିଁଙ୍କୁ ନ ପାଇ ଫେରି ଯାନ୍ତି । ସିଂହୀ ଦେଖେ ଦୁହେଁ କୃତଜ୍ଞତା ନେତ୍ରରେ ତାଙ୍କୁ ଦେଖୁଛନ୍ତି ।

ସିଂହଟି ତାଙ୍କ ଦୁହିଁଙ୍କ ନିକଟକୁ ଯାଇ କହେ "ମୁଁ ତୁମ ଦୁହିଁଙ୍କ ମଧ୍ୟରୁ ଜଣକୁ ବିବାହ କରିବାକୁ ଚାହେଁ କିନ୍ତୁ ଏହା ଦ୍ୱାରା ତୁମ ଦୁହିଁଙ୍କ ବନ୍ଧୁତା ଯେପରି ଅକ୍ଷୁର୍ଣ୍ଣ ରହିବ। ଦୁହେଁ ହସନ୍ତି। ହସି ହସି ଗୋଟିଏ ହଂସ କହେ "ମୁଁ ହେଉଛି ମୋର ବନ୍ଧୁଙ୍କଠୁ ବୟସରେ ସାନ। ତେଣୁ ସେ ତୁମକୁ ବିବାହ କରନ୍ତୁ। ମୁଁ ଦିଅର ରୂପେ ତୁମକୁ ସଦା ସର୍ବଦା ସମ୍ମାନ ଦେବି।

ଏହି ସମୟରେ ଶୃଗାଳଟି ସେହି ସ୍ଥାନ ଛାଡ଼ି ଚାଲି ଯାଉଥାଏ। ସାନ ବନ୍ଧୁଟି ତାଙ୍କୁ ଧରି ଆଣି ସିଂହଙ୍କୁ କହେ "ସିଂହ! ଇଏ ମଧ୍ୟ ମୋର ବନ୍ଧୁ। ସେ ଆମର ସହିତ ରହିବ। ଆଉ ନାନା ମଜା କଥା କହି ସମୟ କଟାଇବ।

ସେହି ଦିନୁ ଏହି ପରିବାର ଗୁମ୍ଫାରେ ରହନ୍ତି। ସମୟେ ସମୟେ ଶୃଗାଳକୁ ମଧ୍ୟ ତାଙ୍କ ସହିତ ଦେଖିବାକୁ ମିଳେ।



# ରାଜକୁମାରୀର କାହାଣୀ

ରାତିର ଗଣ୍ଠିରତା ମଧ୍ୟରେ ବର ଗଛ ଡାଳରେ ବସି ତାର କାହାଣୀ କହିବାକୁ ଆରମ୍ଭ କରେ କୁମ୍ଭାଟୁଆ। ସେ କହେ "ଅନେକ ଦିନ ତଳର କଥା। ଏଠାରୁ ଅଳ୍ପ ଦୂରରେ ସମୁଦ୍ର ତଟରେ ଏକ ରାଜକୁମାର ବାସ କରୁଥାନ୍ତି। ସମୁଦ୍ରର ଗର୍ଜନ, ଶାନ୍ତ ପରିବେଶ ତାଙ୍କୁ ବହୁତ ଭଲ ଲାଗୁଥାଏ। ସେ ତାଙ୍କ ପ୍ରିୟ ମଧୁମଞ୍ଜ ଆଉ

ପତ୍ନୀ ସୁମିତ୍ରା ସହ ଏହି ଶ୍ରେଷ୍ଠ ଦେହ୍‌କା ଘରଟିରେ ସେମାନେ ବାସ କରୁଥାନ୍ତି । ତାଙ୍କୁ ତାଙ୍କ ବାପା ନରେନ୍ଦ୍ର କିଶୋର ବୃତ୍ତି ମାସ କିଛି ଟଙ୍କା ପଠାଉଥିଲେ । ସେଥିରେ ସେମାନେ ଚଳୁଥାନ୍ତି । ତାଙ୍କୁ ଘର କାର୍ଯ୍ୟରେ ସାହାଯ୍ୟ କରିବା ସକାଶେ ଥାନ୍ତି ଜଣେ ଚାକର ଆଉ ଜଣେ ଚାକରାଣୀ ।

ଦୁହେଁ ସ୍ୱାମୀ ସ୍ତ୍ରୀ । ଏହି ରାଜକୁମାର ଏବଂ ତାଙ୍କ ପତ୍ନୀଙ୍କ ଉପରେ ଅନେକ କାହାଣୀ ଶୁଣାଯାଉ ଥାଏ ସେଥିରୁ ଗୋଟିଏ ହେଲ "ରାଜକୁମାରଙ୍କୁ ଯେତେବେଳେ ଅଠର ବୟସ ସେ ସେତେବେଳେ ନିଜର ପ୍ରିୟ ମିତ୍ର ବିରୂପାକ୍ଷଙ୍କ ସହ ଶିକାର ଖେଳିବାକୁ ଯାଉଥାନ୍ତି ନିଜ ରାଜ୍ୟରେ ଥିବା ଅରଣ୍ୟକୁ । ଅନେକ ହିଂସ୍ର ଜନ୍ତୁଙ୍କ ଦ୍ୱାରା ଭରି ରହିଥାଏ ଏହି ଅରଣ୍ୟ । ଏହି ଅରଣ୍ୟର ଭୟଙ୍କରତା ଯୋଗୁଁ ସାଧାରଣତଃ ଏହି ଅଞ୍ଚଳରେ ପଥିକମାନେ ଯିବା ଆସିବା ବନ୍ଦ କରି ଦେଇଥାନ୍ତି ।

ରାଜକୁମାର କିନ୍ତୁ ଥିଲେ ବୀର ଆଉ ନିର୍ଭୀକ । ତାଙ୍କୁ ଚୋର ଡକାୟତର ଭୟ କିମ୍ବା ବାଘ ଭାଲୁର ଭୟ ନ ଥିଲା । ତାଙ୍କର ବନ୍ଧୁ ବିରୂପାକ୍ଷ ଥିଲେ ଜଣେ କବି । ସେ କବିତା ରଚନା କରି ରାଜକୁମାରଙ୍କୁ ପଢ଼ି ଶୁଣାଉଥାନ୍ତି । ଦିନକର କଥା । ରାଜକୁମାର ନିଜର କବି ବନ୍ଧୁଙ୍କୁ ସହ ଏହି ଅରଣ୍ୟରେ ବୁଲୁ ବୁଲୁ ଶୁଣି ପାରନ୍ତି ଏକ ମଧୁର କଣ୍ଠସ୍ୱର । ସେହି ମଧୁର ସ୍ୱର କ୍ରମେ ଦୂରରୁ ଦୂରକୁ ଚାଲି ଯାଉଥିଲା । ଯୁବରାଜ ବନ୍ଧୁଙ୍କ ସହ ଘୋଡ଼ା ସେହି ଦିଗକୁ ଛୁଟାଇ ଦିଅନ୍ତି । କିନ୍ତୁ ସ୍ୱର ଆଗକୁ ଆଗକୁ ଚାଲିଯାଏ ଏବଂ ଏକ ଭଙ୍ଗାରୁଜା ଅଟ୍ଟାଳିକା ମଧ୍ୟରେ ଉଭେଇ ଯାଏ ।

ଦୁହିଁଙ୍କର ଘୋଡ଼ା ଯାଇ ଠିଆ ହୁଏ ସେହି ଅଟ୍ଟାଳିକା ସମ୍ମୁଖରେ । ଘର ଭିତରୁ ଏକ ସୁନ୍ଦରୀ ତରୁଣୀ ଆସି ସେମାନଙ୍କୁ ଅଭ୍ୟର୍ଥନା କରେ । ରୂପା ଡାଳରେ ପାଣି ଦିଏ ଗୋଡ଼ ଧୋଇବାକୁ । ସେମାନଙ୍କୁ ପାଛୋଟି ନିଏ ଗୃହ ଭିତରକୁ । ଘରଟି ପୁରୁଣା ହେଲେ ମଧ୍ୟ ଭିତରଟି ନିର୍ମଳ । ମାର୍ବଲ ପଥର ତଳେ ପକା ଯାଇଛି । ତାର ଉପରେ ପଡ଼ିଛି ମୋଟା ଗାଲିଚା ଶାଗୁଆଣି କାଠର ନିର୍ମିତ ସୋଫା ଉପରେ ବସିବାକୁ ନିର୍ଦ୍ଦେଶ ଦିଏ ସୁନ୍ଦରୀ ତରୁଣୀଟି । ନିଜେ ଗୋଟିଏ ସୋଫାରେ ବସିପଡ଼ି କହେ "ଆପଣମାନଙ୍କୁ ଅତିଥିରୂପେ ପାଇ ମୁଁ ଆପ୍ୟାୟିତ ହୋଇଛି । ଅନେକ ଦିନ ହେଲା କୌଣସି ବ୍ୟକ୍ତି ସହ ମୁଁ କଥୋପକଥନ ହୋଇନି । ମୋର ମା ଅନେକ ଦିନରୁ ମରି ଯାଇଛନ୍ତି । ସେ ଏ ରାଜ୍ୟର ରାଜା କ ମାଈଁଙ୍କ ଭଉଣୀ । ରାଜାଙ୍କ ଇଚ୍ଛା ବିରୁଦ୍ଧରେ ସେ ବିବାହ କରିଥିଲେ ମୋର ପିତାଙ୍କୁ । ତେଣୁ ତାଙ୍କୁ ରାଜ୍ୟରୁ ବାହାର କରିଦେଲେ ।

ମୋର ପିତାଙ୍କର ଯାହା କିଛି ଜମିବାଡ଼ି ଥିଲା ସେ ସବୁ ବିକି ସେ ଦୁଇଟି ଘର କିଣିଛନ୍ତି । ଗୋଟାଏ ଏଠାରେ ଅନ୍ୟଟି ଗୋପାଳପୁର ସମୁଦ୍ର କୂଳରେ । ମୁଁ ଦୁଇ ଦିନ୍, ଏଠାରେ ରହି ବାପାଙ୍କ ପାଖକୁ ଯିବି । ଆପଣମାନେ ଯଦି ଗୋପାଳପୁର ଆସନ୍ତେ ତାହାହେଲେ ସମୁଦ୍ର ତଟରେ ବସି ଦୁଃଖ ସୁଖ ହୁଅନ୍ତେ । ତାର ମଧୁର ବ୍ୟବହାର ଏବଂ କଥା କହିବାର ଭଙ୍ଗୀ ରାଜକୁମାରଙ୍କୁ ମୁଗ୍ଧ କରେ । ସେ ଆହୁରି ମଧ୍ୟ ଜାଣି ପାରନ୍ତି ଏହି ସୁନ୍ଦରୀ ଜଣକ ହେଉଛି ତାଙ୍କ ପିଉସୀ ଝିଅ । ତେଣୁ ନିଜର ପରିଚୟ ଗୁପ୍ତ ରଖି ସେ ଘରକୁ ଫେରନ୍ତି ।

ରାଜକୁମାର ପିତାଙ୍କଠାରୁ ଆଦେଶ ନିଅନ୍ତି ଗୋପାଳପୁର ବୁଲି ଯିବାକୁ । ସେ ସଙ୍ଗରେ ନିଅନ୍ତି ନିଜ କବି ବନ୍ଧୁଙ୍କୁ । ଦୁହେଁ ଗୋପାଳପୁରରେ ପହଞ୍ଚିଲେ ବେଳକୁ ଦିନ ଛଅଟା । ସେମାନେ କାଞ୍ଚନ ନିବାସରେ । ଦୂରରୁ କାଞ୍ଚନ ଏମାନଙ୍କୁ ଦେଖି ଆନନ୍ଦରେ ନାଚି ଉଠେ । ସେ ପିତାଙ୍କୁ କହେ "ଦେଖ, ମୋର ଦୁଇଜଣ ବନ୍ଧୁ ଆସିଛନ୍ତି । ଏମାନେ ସମସ୍ତେ ଆମର କଲେଜରେ ପଢ଼ନ୍ତି । ଆମର ଏତେ ଗୁଡ଼ାଏ ରୁମ୍ ଖାଲି ଅଛି ସେଥିରୁ ଗୋଟାଏ ସେମାନଙ୍କୁ ଦେଇଦେବା । କନ୍ୟାର କଥାରେ ବାପା ଆପତ୍ତି କରିବାର କିଛି ନ ଥିଲା । ଦୁହେଁ ନିଜ ରୁମ୍‌ରେ ପହଞ୍ଚି ଆସବାବ ପତ୍ର ସଜାଡ଼ି ବାହାରନ୍ତି ପଦାକୁ । ଏହି ସମୟରେ କାଞ୍ଚନ ଗୃହା ଧରି ପହଞ୍ଚି କହେ "ମୁଁ ମଧ୍ୟ ବାହାରିଛି ପଦାକୁ ଯିବାକୁ, ତୁମମାନଙ୍କ ସଙ୍ଗରେ ବାହାରକୁ ଯିବି ।

ଆଗ ପଛ ହୋଇ ତିନିହେଁ ଯାଇ ପହଞ୍ଚନ୍ତି ସମୁଦ୍ର ତଟରେ ନୀଳ ସମୁଦ୍ରର ଲହରୀ ଗୁଡ଼ାକ ଧାଇଁ ଆସି ବଡ଼ ବଡ଼ ପଥର ଗୁଡ଼ାକ ଉପରେ ମୁଣ୍ଡ ପିଟିବାରେ ଲାଗନ୍ତି । ଏପରି ଏକ ମନୋରମ ଦୃଶ୍ୟ ଦେଖି କବି ମୁଗ୍ଧ ହୋଇଉଠନ୍ତି । ରାଜକୁମାର କିନ୍ତୁ ଗମ୍ଭୀର ହୋଇ କହନ୍ତି "କାଞ୍ଚନ ! ତୁମେ ବିବାହ କରୁନା କାହିଁକି ?" ହସି ହସି କାଞ୍ଚନ କୁହେ "ମୁଁ ପ୍ରତିଜ୍ଞା କରିଛି ଯଦି ମୁଁ ବିବାହ କରିବି ତାହାହେଲେ ମୋର ମାମୁଁ ପୁଅ ସହ । ଶୁଣିଛି ସେ ବି ମୋର ବୟସର ହୋଇସାରିଲେଣି । ବାପା କହୁଥିଲେ ଥରେ ସେ ଲୁଚି ଲୁଚି ଯାଇ ତାଙ୍କୁ ଦେଖି ଆସିଥିଲେ । ମାଆ ମଲାବେଳକୁ କହିଥିଲେ "ମୁଁ ପ୍ରତିଜ୍ଞା କରୁଛି ତୋତେ ମୋର ଭାଇର ପୁଅ ସହ ବିବାହ କରିବାକୁ । ଯଦି ପାରୁ ତାହାହେଲେ ସେୟା କର । ମୋର ଆତ୍ମା ସ୍ୱର୍ଗରେ

ରହିବା ।" ଦୁହେଁ ଭୁମି ହୋଇ କିଛି ସମୟ ରହିଲେ । ଧୀରେ ଧୀରେ କାଞ୍ଚନକୁ ପାଖକୁ ଭିଡ଼ଆଣି ତାର କାନରେ ଯୁବରାଜ କହନ୍ତି, "ମୁଁ ସେହି ସ୍ୱପ୍ନର ରାଜକୁମାର । ତୁମଠୁ ତୁମର କାହାଣୀ ଶୁଣି ମୁଁ ମାଆଙ୍କୁ ସବୁ କଥା କହି ଦେଇଛି । ବାପା ତାଙ୍କର ମତାମତ ପଠାଇବେ ।

ଏପରି ହସ ଖୁସିରେ ଦୁଇ ଦିନ ବିତିଗଲା । ତୃତୀୟ ଦିନ ଟେଲିଗ୍ରାମ ଆସିଲା । ସେଥିରେ ଲେଖା ଥିଲା ଯଦି ରାଜକୁମାର କାଞ୍ଚନକୁ ବିବାହ କରେ ତେବେ ତାକୁ ରାଜ୍ୟରୁ ବାହାର କରି ଦିଆଯିବ । ସମସ୍ତେ ଟେଲିଗ୍ରାମ ପଢ଼ି ପରସ୍ପରକୁ ଅନାନ୍ତି । ବୃଦ୍ଧ କହନ୍ତି "ମୋର ଝିଅ ସକାଶେ ତୁମେ କପାଇଁ ରାଜ୍ୟ ତ୍ୟାଗ କରିବ ।

ହସି ହସି ରାଜାକୁମାର କହନ୍ତି "ତୁମେ କାହିଁକି ରାଜ୍ୟ ତ୍ୟାଗ କରିଥିଲ ? ରାଜକୁମାରଙ୍କ ସହ କାଞ୍ଚନର ବିବାହ ହୁଏ । ସେମାନେ ଏହିଠାରେ ରହିଯାନ୍ତି । ରାଜକୁମାର ବର୍ତ୍ତମାନ ଏହିଠାରେ ବ୍ୟବସାୟ କରନ୍ତି । ପିତାଙ୍କ ମୃତ୍ୟୁ ପରେ କିଛି ଟଙ୍କା ବାପାଙ୍କ ଜମି ବାଡ଼ିରୁ ମିଳିଯାଏ । ସମସ୍ତେ ସୁଖରେ ଚଳନ୍ତି । ଏବେ ମଧ୍ୟ କାଞ୍ଚନର ସୌନ୍ଦର୍ଯ୍ୟ ଆଉ ମଧୁର ସ୍ୱର ରାଜକୁମାରଙ୍କ ମନରେ ଆନନ୍ଦ ସୃଷ୍ଟି କରି ଚାଲିଛି ।



# ମଧୁମିତାର ନିଶ୍ଚୟ

ଆଜିର ଗଳ୍ପରେ ପକ୍ଷୀମାନଙ୍କୁ କାହାଣୀ ଶୁଣାଇବାକୁ ଯାଇ ବାପ୍ପା ଚଢ଼େଇ କହିଲା " ମୁଁ ଏକ ଶ୍ରେଷ୍ଠ ନଡ଼ିଆ ଗଛରେ ବସା ବାନ୍ଧି ଥାଏ । ଏହି ବସାରେ ବସି ମୁଁ ଅନେକ ଦୂରକୁ ଲକ୍ଷ୍ୟ କରେ ଏବଂ ଅନେକ କଥା ଶିଖେ । ସେଦିନ ଗଛ ଉପରେ ବସି ଧୀର ପବନରେ ମୁଁ ଅନେଇ ଥାଏ ଦୂରକୁ । ଆମର ନଡ଼ିଆ ଗଛର ଅଳ୍ପ ଦୂରରେ ଗୋଟିଏ ଶ୍ରେଷ୍ଠ ପ୍ରସାଦ । ସେହି ପ୍ରାସାଦରେ ରହନ୍ତି ଏକ ଅନୁପମ ସୁନ୍ଦରୀ । ତାଙ୍କର ବୟସ କୋଡ଼ିଏ ବର୍ଷ । ତାଙ୍କର ରୂପରେ ଯାଦୁ ଆଉ କଥାରେ ମଧୁରତା ସମସ୍ତଙ୍କୁ ଆପ୍ୟାୟିତ କରୁଛି । ଯିଏ ଥରେ ତାଙ୍କ ସହିତ କଥା ହେଉଛି ସିଏ ବାରମ୍ବାର କଥା ହେବାକୁ ମନେ କରେ ।

ସେହି ଶ୍ରେଷ୍ଠ ସହରଟିରେ ଜଣେ ଗରିବ ଯୁବକ ଥାଏ । ତାର ପାଠ ପଢ଼ିବାର ସ୍ପୃହା ବହୁତ ଅଧିକ । ଏହି ସୁନ୍ଦରୀ ଧନୀର ଝିଅର ଘରକୁ ଲାଗି ତାହାର ଗୋଟିଏ ଛୋଟିଆ ଘର । ଘରର ଛପର ଚଦରରେ ହୋଇଛି । ଘରଟି ସଫା ସୁତରା । ଦାଣ୍ଡରେ ଅନେକ ଗୁଡ଼ିଏ ମଲ୍ଲୀ ଗଛ । ଗୋଲାପ ଗଛ ଗୁଡିକ ସୌନ୍ଦର୍ଯ୍ୟ ବୃଦ୍ଧି କରିବାରେ ଲାଗିଛନ୍ତି ନିଜର କମନୀୟତା ପ୍ରଦର୍ଶନ କରି । ରଜନୀଗନ୍ଧାର ଭୁରୁ ଭୁରୁ ସୁଗନ୍ଧ ମନ ପ୍ରାଣରେ ଆନନ୍ଦ ଖେଳାଇ ଦେଉଛି ।

ମଧୁମିତାର ମଧୁର କଥାରେ ଥରେ ଥରେ ପ୍ରିୟଦର୍ଶନ ନିଜକୁ ଭୁଲିଯାନ୍ତି । କଲେଜରେ ଦୁହେଁ ଏକାଙ୍କ ପଢନ୍ତି । ନିଜ ଘରୁ ମଧୁମିତାକୁ ତାର ବାପା ଯୁମାହାରେ ବସାଇ ଛାଡି ଦେଇ ଆସନ୍ତି । ପ୍ରିୟଦର୍ଶନ ଚାଲି ଚାଲି ଯାଏ ପ୍ରତ୍ୟହ କଲେଜକୁ । କିନ୍ତୁ ସେ ସେଥି ପ୍ରତି କେବେହେଲେ ଭ୍ରୂକ୍ଷେପ କରିନାହିଁ । ଦିନକର କଥା । ସୂର୍ଯ୍ୟ ଭଗବାନ ଆକାଶରେ ଅସ୍ତ ହେବାକୁ ଯାଉଛନ୍ତି ନିଜର କନକ କିରଣ ବିଚ୍ଛୁରିତ କରି । ପକ୍ଷୀମାନେ ଦଳ ଦଳ ହୋଇ ଆକାଶରେ ନିଜ ନିଜ ବସାକୁ ଫେରିବାରେ ଲାଗିଛନ୍ତି । ପ୍ରିୟଦର୍ଶନ ଧୀରେ ଧୀରେ କଲେଜରୁ ବାହାରିଲା ଘର ଆଡକୁ । ଏହି ସମୟରେ କାହାର ମଧୁର ସ୍ୱର ଶୁଣିବାକୁ ପାଇଲା । ପଛକୁ ଫେରି ଦେଖେ ତ ମଧୁମିତା ମଧୁର ସ୍ୱରରେ କହୁଛି "ପ୍ରିୟଦର୍ଶନ, ଟିକିଏ ରୁହ । ମୁଁ ବି ତୁମ ସଙ୍ଗରେ ଯିବି । ଆଜି ବାପାଙ୍କ ଦେହ ଖରାପ ଥିବା ହେତୁ ସେ ଆସି ପାରି ନାହାନ୍ତି ।" ତାର ନାଲି ଓଠ ତଳେ ଧଳା ଦନ୍ତ-ପନ୍ତି ଗୁଡିକ ଦେଖା ଦେଇ ପୁଣି ଲୁଚି ଯାଉଛନ୍ତି । ପ୍ରିୟଦର୍ଶନ ମନେ ମନେ ଭାବିଲେ "ଏପରି ଏକ ସୁନ୍ଦର ପ୍ରତିମା କିପରି ବା ସେ ସୃଷ୍ଟିକର୍ତ୍ତା ତିଆରି କରି ପାରିଲେ ।

ଦୁହେଁ ଚାଲିଲେ ରାସ୍ତାର କଡେ କଡେ । ପ୍ରିୟଦର୍ଶନ କଥା ଆରମ୍ଭ କରିବାକୁ ଯାଇ କହିଲେ "ମଧୁମିତା, ତୁମ ବାପାଙ୍କୁ କଣ ହୋଇଛି ? ମୁଁ ଯାଇ ତାଙ୍କୁ ଦେଖି ପାରେ କି ?" ମଧୁମିତାର ମୁହଁରେ ପ୍ରଫୁଲ୍ଲତାର ଚିହ୍ନ ଦେଖାଯାଏ । ସେ ପ୍ରିୟଦର୍ଶନ ଦୁଇ ହାତ ଧରି ପକାଇ ଆବେଗରେ କହେ "ପ୍ରିୟଦର୍ଶନ ! ତୁମେ ପିତାଙ୍କୁ ଦେଖିବାକୁ ଆସିପାର । ଅନେକ ଦିନ ପରେ ମୁଁ ଜଣେ ବନ୍ଧୁ ପାଇଛି ଯେ କି ମୋର ପିତାଙ୍କର ଧନ ପ୍ରତି ଆଗ୍ରହ ପ୍ରକାଶ

କରନାହାନ୍ତି ।" ପ୍ରିୟଦର୍ଶନର ମନ ଆଉ ହୃଦୟ ଆବେଗରେ ଭରିଯାଏ । ସେ ଭୁଲିଯାଏ ମଧୁମିତା ସବୁ ।

ଘରେ ପହଞ୍ଚି ମଧୁମିତା ପିତାଙ୍କ କୋଠରୀକୁ ନେଇଯାଏ ପ୍ରିୟଦର୍ଶନକୁ । ବୃଦ୍ଧ ଶଯ୍ୟାଶାୟୀ । ଶରୀରରେ ଅମାପ ବଳ ଏହି ବୃଦ୍ଧଙ୍କର । ମଧୁମିତାର ମା'ର ମୃତ୍ୟୁ ପରେ ସେ ଆଉ ପୁନର୍ବିବାହ କରି ନାହାନ୍ତି । ନିଜର ଝିଅକୁ ମାଆ ଆଉ ବାପାର ସ୍ନେହ ଦେଇ ବଢ଼ାଇଛନ୍ତି ସୁଖ ଆଉ ସମୃଦ୍ଧି ମଧ୍ୟରେ ।

ପ୍ରିୟଦର୍ଶନ ଲକ୍ଷ୍ୟ କରେ ବୃଦ୍ଧଙ୍କ ମୁଖ ମଣ୍ଡଳରେ ଅସୁସ୍ଥତାର ଚିହ୍ନ ଦେଖା ଯାଉ ନ ଥାଏ । ଏହି ସମୟରେ ବୃଦ୍ଧ ତାଙ୍କୁ ନିକଟକୁ ଡାକି ବସିବାକୁ କହିଲେ । ସେ ବସି ସାରିବା ପରେ ମଧୁମିତା ଚାହା ଧରି ଆସି ପହଞ୍ଚିଲେ ଯଥାସ୍ଥାନରେ । ଚାହା ପିଉ ପିଉ ବୃଦ୍ଧ କହିଲେ ମୁଁ ଚାହୁଁଛି ମୋର ଏହି ସମସ୍ତ ସମ୍ପତ୍ତି ମୋର ସାନ ଝିଅର ପୁଅ ନାମରେ କରି ଦେବି । ଆଉ ମଧୁମିତାକୁ କେବଳ ମାସିକ ପାଞ୍ଚଶହ ଟଙ୍କା ମିଳିବ ? ସେଥିରେ ସେ ତାର ଶିକ୍ଷା ସମାପ୍ତ କରିବ ।

ହସି ହସି ପ୍ରିୟଦର୍ଶନ କହନ୍ତି "ମଧୁମିତାର ବୟସ ହେଲାଣି । ଆପଣ ତାଙ୍କୁ ବିବାହ କରି ଦିଅନ୍ତୁ ।" ବୃଦ୍ଧ କହନ୍ତି "ପ୍ରିୟଦର୍ଶନ ! ତୁମେ କଣ ମଧୁମିତାକୁ ବିବାହ କରିବ ? ତାକୁ କେବଳ ମାସକୁ ପାଞ୍ଚଶହ ଟଙ୍କା ମିଳିବ ? ଯେତେ ଯୁବକ ବିବାହ ହେବାକୁ ଆସିଛନ୍ତି ସେମାନେ ସମସ୍ତେ ମୋର ଧନ ଲୋଭ କରିବାର ଆଶା ନେଇ ଆସିଛନ୍ତି କିନ୍ତୁ ପ୍ରକୃତ ତଥ୍ୟ ଜାଣି ସାରିବା ପରେ ଫେରି ଯାଇଛନ୍ତି ।

ହସି ହସି ପ୍ରିୟଦର୍ଶନ କହେ "ମୁଁ ମଧୁମିତାର ରୂପ ଗୁଣରେ ମୁଗ୍ଧ । ମୋତେ ତୁମର କିଛି ସମ୍ପତ୍ତି ର ଦରକାର ନାହିଁ । କେବଳ ମୋର ପାଇଁ ଖଣ୍ଡିଏ ଚାକିରୀ ମିଳିଲେ ମୁଁ ବିବାହ ହେବାକୁ ପ୍ରସ୍ତୁତ । ଆଜି ତାକୁ ଯେଉଁ ମାସିକ ପାଞ୍ଚଶହ ମିଳିବ ତାହା ଗରିବ ଶିଶୁଙ୍କୁ ଦେବାରେ ଉପଯୋଗ କରି ପାରିବ ସେ ।

ହସି ଉଠିଲେ ବୃଦ୍ଧ ଜଣକ । ମୁଁ ସେଇଆ ହିଁ ଚାହୁଁଥିଲି । ତୁମେ ଦୁହେଁ ମନ ଦେଇ ପାଠ ପଢ । ତୁମେ ଚାକିରୀ କଲା ପରେ ମଧୁମିତା ତୁମକୁ ବିବାହ କରିବ ।

ଯୁବକର ନିର୍ଲୋଭତା ବୃଦ୍ଧଙ୍କ ମନରେ ଆଶାର ସଞ୍ଚାର କରାଇଲା । ଯୁବକ ଭାଗକ୍ରମେ ଏମ୍. ଏ. ପାଶ କରି କଲେଜରେ ଅଧ୍ୟାପକ ନିଯୁକ୍ତ ହୁଅନ୍ତି । ମଧୁମିତାର ସହ ତାଙ୍କର ବିବାହ ହୁଏ । ବୃଦ୍ଧ ମରିବା ପୂର୍ବରୁ ସମସ୍ତ ସମ୍ପତ୍ତି ନିଜ ଝିଅ ଆଉ ଜ୍ୱାଇଁଙ୍କ ନାମରେ କରି ଦିଅନ୍ତି । ଏହା ଦେଖି ପ୍ରିୟଦର୍ଶନ ଆଶ୍ଚର୍ଯ୍ୟ ଚକିତ ରହିଯାଏ । ତାହାହେଲେ ତୁମ ପିତା, କଣ ମୋର ପରୀକ୍ଷା ନେଉଥିଲେ ? ମଧୁମିତା ନିଜ ପ୍ରିୟଙ୍କ ପାଦତଳେ ପଡ଼ିଯାଇ କହେ କ୍ଷମା କର ପ୍ରିୟଦର୍ଶନ । ତୁମ ଭଳି ମହାନ୍ ପୁରୁଷର ପରୀକ୍ଷାକୁ କିଏ ନେବ ?" ଟେକି ଉଠାଇ ମଧୁମିତାକୁ ପ୍ରିୟଦର୍ଶନ ପାଖରେ ବସାଇ କହନ୍ତି "ତୁମ ପିତା ଅତି ଚତୁର ଥିଲେ । ତାଙ୍କର ମୃତ୍ୟୁ ମୋତେ ବହୁତ କଷ୍ଟ ପ୍ରଦାନ କରୁଛି । ଏହା ଶୁଣି ମଧୁମିତା କାନ୍ଦି ପକାଇଲେ । ସେହି କାନ୍ଦଣା ପିତାଙ୍କ ମୃତ୍ୟୁଠାରୁ ସ୍ୱାମୀଙ୍କ ଅଧିକ ଉଦାରତା ଯୋଗୁ ହିଁ ସୃଷ୍ଟି ହୋଇଥିଲା ।

# ସମ୍ରାଟ

ତାର କହାଣୀ କହିବାକୁ ଯାଇ ବୃଦ୍ଧ ଫର୍ଷ୍ଟି କହେ "ସେ ବନଟି ସେ ଉଡ଼ ଉଡ଼ ଚାଲି ଯାଇଥାଏ ଅନେକ ଦୂର । ସେହି ଜଙ୍ଗଲରେ ଅନେକ ଗୁଡ଼ଏ ବଣୁଆ କୁକୁର ଅଛନ୍ତି । ସେହି ଜଙ୍ଗଲ ନିକଟରେ ଘୋଡ଼ା ତାଲିମ କେନ୍ଦ୍ର । ସେଠାରେ ଅନେକ ଘୋଡ଼ାଙ୍କୁ ତାଲିମ ଦିଆଯାଏ । ସେମାନଙ୍କ ମଧ୍ୟରୁ ଯେ କଥା ନ ଶୁଣେ ତାଙ୍କୁ ମାଡ ମଧ୍ୟ ଦିଆଯାଏ । ସେ ଦିନ ଏକ ନବାଗତ ଘୋଡ଼ା ମନେ ମନେ ଭାବେ ଏହି ସ୍ଥାନରୁ କପରି ସେ ଜଙ୍ଗଲକୁ ପଳାଇବ । ଏଠାରେ ଦିନରାତି ଧାଇଁବା ଛଡ଼ା ଯେପରି ଆଉ କିଛି କାମ ନାହିଁ । ଧଳା ଫର ଫର ତାର ରଙ୍ଗ । ଦେଖିବାକୁ ଅତ୍ୟନ୍ତ ସୁନ୍ଦର । କେହି କେହି ତାଲିମଦାତା ତାକୁ ଅତ୍ୟନ୍ତ ଭଲ ପାଉଥାନ୍ତି । ସେମାନେ ତାର ନାମ ଦେଇଛନ୍ତି ସମ୍ରାଟ । ପ୍ରକୃତରେ ତାର ରୂପ ତାର ଚାଲି ଅତ୍ୟନ୍ତ ଚମତ୍କାର । ଯାହା ଦଣ୍ଡ ମିଳିଲେ ବି ଛେ ମିକୁ ସେ କଷ୍ଟସ୍ତ ସୁବିଧା ପାଇଲେ ଜଙ୍ଗଲକୁ ଧାଇଁ ଚାଲିଯିବା ପାଇଁ ତାର ମନରେ ଉତ୍ସୁକତା ଜାଗି ଉଠେ ।

ଦିନକର କଥା । ଜଣେ ନୂତନ ମିଲିଟାରୀ ଅଫିସର ତାର ପିଠିରେ ବସି ଘୋଡ଼ା ଦୌଡ଼ ଶିକ୍ଷା କରୁଥାଂନ୍ତି । ସେ ଯେତେବେଳେ ତଳେ ପଡ଼ଯାଂନ୍ତି ଏହି ସୁଯୋଗ ପାଇ ସମ୍ରାଟ ଜଙ୍ଗଲକୁ ଧାଇଁଯାଏ । ସେ ଯେତେବେଳେ ଜଙ୍ଗଲକୁ ଯାଏ ସେହି ସମୟରେ ସୂର୍ଯ୍ୟ ଭଗବାନ ଆକାଶରେ ଅସ୍ତ ହେବାକୁ ଯାଉଥାଂନ୍ତି । ସେ ଦେଖେ ଗୋଟାଏ

ନଈ କୂଳରେ ଏହି ଜଙ୍ଗଲଟି ଅବସ୍ଥିତ । ସେ ଧୀରେ ଧୀରେ ନଈରେ ପଶେ । ଗ୍ରୀଷ୍ମ ସମୟ ହୋଇଥିବାରୁ ନଈରେ କମ୍ ପାଣି ଥାଏ । ତେଣୁ ସେ ସହଜରେ ଅପର ପାଟକୁ ଯାଏ ଏବଂ ସେଠାରେ ଜମା ହୋଇଥିବା ଅନେକ ଜୀବଙ୍କୁ ଦେଖି ସେ ଏକାବେଳକେ ଆଶ୍ଚର୍ଯ୍ୟ ହୋଇଯାଏ । ଜଙ୍ଗଲର ଗୋଟିଏ କୋଣରେ ସ୍ୱାମୀ ସ୍ତ୍ରୀ ଦୁଇଟି ବଳଦିଆ କୁକୁର ଠିଆ ହୋଇ ନୂତନ ଅତିଥିଙ୍କୁ ଦେଖନ୍ତି । ତାଙ୍କଠାରୁ ଅଳ୍ପ ଦୂରରେ ରହି ତାଙ୍କ ପୁଅ କହେ "ମା ! ମୋର ସହିତ ଏହି ଧଳା ଘୋଡ଼ାଟା ମିତ୍ରତା କରିବ ଭଲ ହେବ । ସେ ଅତ୍ୟନ୍ତ ସୁନ୍ଦର ଆଉ ତେଜକଣ ଦେଖାଯାଉଛି । ତା'ର ପିଠିରେ ବସି ମୁଁ ବଣ ମଧ୍ୟରେ ଶ୍ରେଷ୍ଠ ଶ୍ରେଷ୍ଠ ହରିଣ ଛୁଆଙ୍କୁ ଶିକାର କରିବ ।"

ପୁଅର କଥାଟା ବାପା ମା ଉଭୟଙ୍କ ମନକୁ ପାଇଲା । ସ୍ତ୍ରୀଟି କହିଲା "ପ୍ରକୃତରେ ଏହି ଧଳା ଘୋଡ଼ାଟା ସହ ମିତ୍ରତା କଲେ କ୍ଷତି ନାହିଁ । ତା'ର ପିଠିରେ ବସି ଆମେ ଶିକାର କରି ପାରିବା । ଯାହା ହେଉ ବାପ, ମା ଓ ପୁଅ ତିନହେଁ ମିଶି ଧଳା ଘୋଡ଼ା ସମ୍ରାଟଙ୍କ ନିକଟକୁ ଯାଇ କହିଲେ "ନମସ୍କାର । ଆମେ ତୁମ ସହ ମିତ୍ରତା କରିବାକୁ ଆସିଅଛୁ । ତୁମର ପ୍ରଧାନ ଶତ୍ରୁ ହେଉଛି ମଣିଷ । ତା'ର ବନ୍ଧନରୁ ମୁକ୍ତ ହୋଇ ତୁମେ ଲୁଚି ଲୁଚି ଏଠାକୁ ଚାଲି ଆସିଛ । ମଣିଷ ନିଶ୍ଚୟ ତୁମକୁ ଏଠାରୁ ନେଇ ଯିବାକୁ ଜଙ୍ଗଲକୁ ଆସିବ । ତା'ର ସହିତ ଆଣିଥିବ ଅନ୍ୟ ଘୋଡ଼ା । ତୁମକୁ ତା'ର ସହ ବାନ୍ଧି ନେଇଯିବ ଏହି ଜଙ୍ଗଲରୁ । କିନ୍ତୁ ଏପରି ସମୟ ଆସିଲେ ତୁମକୁ ଆମେ ତିନି ଜଣ ସାହାଯ୍ୟ କରିବୁ । ରାତି ହେଲେ ତୁମେ ଯେତେବେଳେ ଠିଆ ହୋଇ ଢୁଳୁଥିବାରେ ଲଟିକ ମୁଁ ସେତେ-

ବେଳେ ତୁମକୁ ଜଗିବ । ତୁମ ନିଦ ଭାଙ୍ଗିଗଲେ ମୁଁ ତୁମ ଉପରେ ବସି ହରିଣ ଶିକାର କରିବ । ମୋର ବାପା ମଧ୍ୟ ତୁମ ଉପରେ ବସିବେ । କେଶ ମଜା ହେବ । ତୁମେ ଘାସ ଚରିଲେ ଆମେ ଜଗିବୁ ।

ଘୋଡ଼ାଟି ଟିକଏ ଚିନ୍ତାକରି କହିଲା "ତ ହେବେ‌ଲେ ମୁଁ ତୁମ ପରିବାରର ସଦସ୍ୟ ହେଲି ।"

ଗୃହ ଜଣ ଆନନ୍ଦରେ ରହିଲେ । କେତେ ଦିନ ପରେ ସୁଶୀଳା ନାମକ ଘୋଟକୀକୁ ହଠାତ୍ ଜଙ୍ଗଲରେ ଦେଖି ସମ୍ରାଟ ଆଶ୍ଚର୍ଯ୍ୟ ହୋଇଗଲା । ସୁଶୀଳର ସୌନ୍ଦର୍ଯ୍ୟ ସ୍ୱାର ମଧ୍ୟରେ ଖୁବ ବୃଦ୍ଧି ପାଇଛି । ତାର ଯୌବନ ଭରା ଅଙ୍ଗ ମଧ୍ୟ ଦେଖି ସମ୍ରାଟ ମନରେ ସୁଶୀଳା ପ୍ରତି ଆକର୍ଷଣ ଜନ୍ମେ । ସେ ଧୀରେ ଧୀରେ ତାର ନିକଟକୁ ଯାଇ ତାକୁ ପ୍ରେମ ନିବେଦନ କରେ । ସୁଶୀଳା ହସି ହସି କହେ "ତୁମ ସହିତ ପ୍ରେମ କରି ଏହି ଜଙ୍ଗଲରେ ରହିବାକୁ ମୋର ଟିକଏ ହେଲେ ଇଚ୍ଛା ନାହିଁ । ଏଠାରେ ବୁଟ ଦାନା ମିଳିବ ବା କେଉଁଠି ? ହେ ସମ୍ରାଟ ! ମୋର ଏହି ଶରୀର ତ ତୁମରି ସକାଶେ । କିନ୍ତୁ ତୁମେ ପୁଣି ଆମ ଘୋଡ଼ାଶାଳକୁ ଫେରି ଚାଲ । ଦୁହେଁ କଥା ହୋଇ ଆସିଲେ କୁକୁରମାନଙ୍କ ପାଖକୁ ।

ସମ୍ରାଟର ବନ୍ଧୁ ଟ୍ରେଟ କଳାଆଟି କହିଲା, "ତୁମେ ସୁଶୀଳାକୁ ଭଲ ପାଉଛ । ତୁମର ଯୌବନ ଆସିଛି । ତୁମର ମନ ନାରୀ ପ୍ରତି ଆକର୍ଷିତ ହେଉଛି । କିନ୍ତୁ ତୁମେ ସୁଶୀଳାକୁ ପାଇବାକୁ ଯାଇ ଯାହା କିଛି ହରାଇବ ତାହା ପ୍ରତ୍ୟେକ ପ୍ରାଣୀଙ୍କ ଜୀବନରେ ଅମୂଲ୍ୟ ଅଟେ । ତାହା ହେଉଛି ସ୍ୱାଧୀନତା । ତୁମେ ସ୍ୱାଧୀନ ଭାବରେ

ଚଲ୍ ବୁଲ୍ କରିବାର କ୍ଷମତା ହରାଇବ ।" ସମ୍ରାଟର ମୁଣ୍ଡକୁ ଏ କଥା ଆସି ନ ଥିଲା । ସେ ଠିକ୍ କଲେ ଘୋଡାଶାଳକୁ ଗଲେ ସେ ହେବ ମଣିଷର ଗୋଲାମ । ତାକୁ ସ୍ୱାଧୀନତା ଦରକାର ନାହିଁ, ଦରକାର ସ୍ୱାଧୀନତା, ମୁକ୍ତି । ସେ ଧୀରେ ଧୀରେ ସେଠାରୁ ଚାଲିଗଲେ ଦଶ ଚଟକ୍ । ଆଉ ସୁଶୀଳାକୁ ବଳଆ ବୁଝାଇ କହିଲା "ସୁଶୀଳା ! ତୁମେ ମୁକ୍ତ । ତୁମେ ମୁକ୍ତ । ଏଠାରେ ଯଦି ରୁହ ତାହାହେଲେ ତୁମେ ପାଇବ ସ୍ୱାଧୀନତା ଏବଂ ସମ୍ରାଟ ଯଦି ରଖିବେ କେବଳ ପାଇବ ଉତ୍ତମ ଖାଦ୍ୟ ଆଉ ହରାଇବ ସ୍ୱାଧୀନତା !"

ବୁଲି ବୁଲି ବରଷ ମଝରେ ଯେତେବେଳେ ସମ୍ରାଟ ଫେରିଲେ ଦେଖିଲେ ସୁଶୀଳାକୁ । ତାର ବନ୍ଧୁ ଶ୍ରେଷ୍ଠ ବଳଆ ସୁଶୀଳାର ପିଠିରେ ବସି ଶିକାର କରିବାକୁ ଯାଉଛି ଆଉ ତାର ସଙ୍ଗରେ ଅଛନ୍ତି ତାଙ୍କର ବାପା ମା । ସମ୍ରାଟ ବନ୍ଧୁର ବାପା ମାଆଙ୍କୁ ପିଠିରେ ବସାଇ ଶିକାରକୁ ଗଲା । ସେଥି ଉପରୁ ସେମାନେ ଏକାଠି ରହିଲେ । ସେମାନଙ୍କ ଅନେକ ଗୁଡ଼ିଏ ଛୁଆ ହେଲାଣି । ଥରେ କେତେକ ଅଫିସର ସମ୍ରାଟ ଆଉ ସୁଶୀଳାକୁ ଦେଖି ଚିହ୍ନି ପାରିଲେ ; ନିଜ ପିଠିରେ ବସାଇ ଆଣି ଘୋଡାଶାଳର ଅଳ୍ପ ଦୂରରେ ଠିଆହେଲେ । ଅଫିସରମାନେ ଓହ୍ଲାଇ ପଡ଼ିବାରୁ ପୁଣି ଜଙ୍ଗଲକୁ ଫେରିଗଲେ ।



# ଚଢେଇର ଛୁଆ

ତାର କାହାଣୀ କହିବାକୁ ଯାଇ ମାଛରଙ୍କା କହିଲା "ସେ ଦିନ ମୁଁ ଦେଖିଲି କେତେ ଜଣ ଧୀବର ଜାଲ ଧରି ଭୁବନେଶ୍ୱରରୁ ବାହାରିଲେ । ମୁଁ ସେମାନଙ୍କ ଉପରେ ଉଡ଼ି ଉଡ଼ି ଚାଲିଲି । ଅଳ୍ପ ଦୂର ଗଲା ପରେ ବିଦ୍ୟୁତ୍‌ପୁରୀ ପଡ଼ିଲା । ଦୃଢ଼ ଉଚ୍ଚ ପ୍ରାଚୀର ବେଷ୍ଟିତ ଏହି ସ୍ଥାନରେ ଅନେକ ଗୁଡ଼ାଏ ଘର ଅଛି । ଏହାର ପଶ୍ଚିମ ଦିଗକୁ ଇଞ୍ଜିନିୟରିଙ୍ଗ ସ୍କୁଲ ବୋଡ଼ିଂ । ତାର ଆଗକୁ ଗୋଟିଏ ଅଫିସ । ଏହି ଅଫିସ ଉପରେ ଏହି କଲୋନୀର ରକ୍ଷଣାବେକ୍ଷଣର ଦାୟିତ୍ୱ ନ୍ୟସ୍ତ । ଏହି ଅଫିସର ବାହାରପଟେ ଅନେକ ଗୁଡ଼ାଏ ନଡ଼ିଆ ଗଛ । କଅଁଳିଆ ପତ୍ର ଗୁଡ଼ିକ । ଅସରଏ ବର୍ଷା । ଅଳ୍ପ ଦିନ ତଳେ ହୋଇ ଯାଇଥିବାରୁ ପତ୍ର ଗୁଡ଼ିକ ନୂଆଁ ନୂଆଁ କଅଁଳୁଛି । ତା'ର ପାଖକୁ ଲାଗି ଗୋଟାଏ କଆଲଠା । ଅନେକ ଗୁଡ଼ାଏ କଆ ଗଛ ଲାଗାଲାଗି ହୋଇ ବଢ଼ିଛନ୍ତି । କଆଫୁଲ ଫୁଟି ତା'ର ମହକରେ ସିଭିଲ ଅଫିସ ମହକି ଉଠୁଛି ।

ମୋର ଏହି ଟିକିନିଆ ବର ଗଛଟିକୁ ଦେଖି ଭାରି ଲୋଭ ହେଲା । ଏହାରି ଡାଳରେ ଟିକିଏ ବିଶ୍ରାମ ନେବାର ଆଶା ସମ୍ବରଣ କରି ନ ପାରି ତାରି ଡାଳରେ ବସି ପଡ଼ିଲି । ସକାଳର ଧୀର ପବନ ମୋର ଦେହରେ ବାଜି ଏକ ପ୍ରକାର ଶିହରଣ ଜନ୍ମ କରୁଥାଏ । ନାଲିକେଳ ଗଛରେ ବସି ଚଢ଼େଇ ଛୁଆଟି ଏହି ଡେଉଁଥିବା ପକ୍ଷୀ ଗୁଡ଼ିକୁ ଅନାଇ ରହିଥାଏ । ତାରି ପର କଅଁଳିବାକୁ ଲାଗିଥାଏ ।

ତା'ର ମନରେ ଅଦମ୍ୟ ଆଶା, ସେ ଚେଷ୍ଟା କରେ ଉଡ଼ିବାକୁ କିନ୍ତୁ ଉଡ଼ି ପାରେ ନା। ମନ ମାରି ବସି ପଡ଼େ ପୁଣି ଅନାଏ ତଳକୁ। ତା'ର ମନରେ ଆନନ୍ଦ ଜାତ ହୁଏ। ପୁଣି ଉଡ଼ିବାକୁ ଚେଷ୍ଟା କରେ।

ବୃକ୍ଷର ଅପର ପାର୍ଶ୍ୱରେ ବସି ମୁଁ କହେ "ଚଢ଼େଇ ଛୁଆ! ତୁମେ ଉଡ଼ିବାକୁ ଏତେ ଚଞ୍ଚଳ ହୋଇ ଉଠୁଛ କାହିଁକି? ତୁମର ଶରୀର ଡେଣା ଉଭୟରୂପେ ଶକ୍ତ ହୋଇ ପାରିନି। ଅପେକ୍ଷା କର। ପରେ ଶକ୍ତ ହେବ ଆଉ ତୁମେ ଦେଖିବ ନୀଳ ଆକାଶ।"

ଜ୍ୟେଷ୍ଠ ଛୁଆଟି ମୋତେ ବଲ ବଲ ଅନାଇ କହେ "ଦେଖ ପକ୍ଷୀ। ଗଛର ତଳେ କପରି ସଦ୍ୟ ଉଡ଼ୁଥିବା ପକ୍ଷୀ ଛୁଆମାନେ ଫକ୍ ଫକ୍ ହେଇଁ ମୋତେ ଆହ୍ୱାନ କରୁଛନ୍ତି ଯେ ତୁମେ ଉଡ଼ିବାକୁ ଚେଷ୍ଟା କର। ଏମାନେ କାହିଁକି ଫକ୍ ଫକ୍ ହେଉଁଛନ୍ତି ତୁମେ ବୁଝି ପାରୁଛ? ଏମାନେ ସମସ୍ତେ ମୋର ସହିତ ଜନ୍ମ ନେଇଥିଲେ। ସେମାନେ ଯେତେବେଳେ ଉଡ଼ିବାକୁ ଚେଷ୍ଟା କରୁଥିଲେ ମୁଁ ସେମାନଙ୍କୁ କହୁଥିଲି "ତୁମେ ଏତେ କଷ୍ଟ ପଉଛ କାହିଁକି? ନୀଳ ଆକାଶ, ଅଦୂରର ପୋଖରୀ, ଶସ୍ୟ କ୍ଷେତ ସେ ସବୁ ତ କୁଆଡେ ପଳାଉନି। ବିଦ୍ୟୁତ୍‌ପୁରୀ ମେପାରେ ବିଲରେ ତ ବର୍ତ୍ତମାନ ଧାନ ପାଚି ଆସୁଛି। ମୁଁ ଗଛରେ ବସି ଦେଖି ପାରୁଛି ତାହା ପାଚିବାର ଆହୁରି କେତେ ଦିନ ବାକି ଅଛି। ମୁଗ ବୁଣିବାକୁ ଚଷା ଆସିଲେଣି। ମୁଗ ଗଛ ହୋଇ ପାଚିବାକୁ ଅନେକ ଡେରି। ଏହି ବିଲମାନ ତ ଆମକୁ ଅନେକ ଦିନ ପର୍ଯ୍ୟନ୍ତ ଶସ୍ୟ ଦେବ।

ନୀଳ ଆକାଶ ତ ତା ଦେହରେ ନୀଳ ରଙ୍ଗ ନେଇ ଯେମିତ ସେମିତ ଅନାଇ ରହିଛି । ଏହି ଗଛ ତ ଯେମିତ ସେମିତ ଅଛି, ତାର କିଛି ପରିବର୍ତ୍ତନ ନାହିଁ । କିନ୍ତୁ ଏମାନେ ମୋ କଥା ମାନନ୍ତେ ତା କାହିଁକି ? ସେମାନେ ଅହରହ ଚେଷ୍ଟା କରନ୍ତି ଉଡନ୍ତି । କେତେ ଥର ପଡନ୍ତି ଉଠନ୍ତି । ଅନେକ ଥର ଆମର ମା' ପୁଙ୍କୁ ନିଜ ଚଞ୍ଚୁରେ ତଳୁ ଉଠାଇ ଆଣି ପୁଣି ବୃକ୍ଷ କୋରଡରେ ରଖିଦିଏ । କିନ୍ତୁ ମୁଁ ନିର୍ନିମେଷ ନୟନରେ କେବଳ ଏହି ଛୁଆ ମାନଙ୍କ କାମ ଦେଖୁଥାଏ । ମୋର ଉଡ଼ିବା ପ୍ରତି ଆଗ୍ରହ ନ ଥାଏ । ସବୁ କିଛି ନୀରସ ଲାଗେ । ମାଁ ଯାହା କିଛି ଖାଦ୍ୟ ଆଣିଦିଏ ତାହା ଖାଇ ଦେଇ ମୁଁ ଆଗ୍ରହରେ ଶୋଇପଡେ । ସକାଳର ଉଷୁମ ଉଷୁମ ସୂର୍ଯ୍ୟ କିରଣରେ ମୋର ଶରୀର ଅତ୍ୟନ୍ତ ଆନନ୍ଦ ପାଏ ।

ଦିନେ ମୁଁ ଅନୁଭବ କଲି, ମୋ ଶରୀରରେ ଏକ ପ୍ରକାର ଅନୁପମ ଶକ୍ତି ସଞ୍ଚାର ହେଉଛି । ମାଁଙ୍କୁ ପଚାରିବାରୁ ସେ କହେ "ଏହା ହେଉଛି ପ୍ରକୃତିଗତ । ତୁମେ ପକ୍ଷୀ । ତୁମ ଶରୀରରେ ଡେଣା ଜନ୍ମଲାଭ କରିଛି । ଅମାପ ବଳ ଡେଣାରେ ଭରି ରହିଛି । ଦେଖ, ତୋର ଭାଇ ଭଉଣୀମାନେ କିପରି ଉଡି ପାରିବାର ଆନନ୍ଦରେ କିପରି ଫର୍ ଫର୍ ହୋଇ ଡେଉଁଛନ୍ତି । ସେ କହେ ତୁମେ କଷ୍ଟ ପଡ । ଡେଇଁ ପଡ ଗଗନର ଅଗାଧ ପବନରେ । ଚେଷ୍ଟା କର ବାବୁ ଉଡ଼ିବାକୁ । ଏହି ସୁନ୍ଦର ସଂସାରରେ ଅନେକ ସ୍ଥାନ ଅଛି, ନୀଳ ସମୁଦ୍ର ଅଛି । ବନ ଜଙ୍ଗଲରେ ଘୁରି ବୁଲୁଥିବା ଅସଂଖ୍ୟ ଜୀବଜନ୍ତୁଙ୍କୁ ଦେଖି ତୁମେ ମୁଗ୍ଧ ହୋଇଯିବ । କେଉଁଠାରେ ପର୍ବତ ଉପରୁ ଝରୁଥିବା ନିର୍ଝରିଣୀ ଦେଖି ପାରୁଥିବ ତ କେଉଁଠି ଭଉଁରି ବୁଲେଇ ଜଳରାଶି ବହିଯାଉଥିବାର ଦେଖିବ ।

ସମସ୍ତ ସୌନ୍ଦର୍ଯ୍ୟ ଭରି ରହିଛି ଏହି ସଂସାରରେ । ସୂର୍ଯ୍ୟଙ୍କ ଅଗ୍ରଗାମୀ କିରଣର ମଧୁରିମା ତୁମେ ଅନୁଭବ କରିପାରିବ ଆକାଶରେ ଉଡ଼ି ବୁଲିବା ସମୟରେ । ତେଣୁ ଏହି ବିଶାଳ ଆକାଶରେ ଉଡ଼ି ବୁଲିବାର ସାହସ ମୋର ବଢ଼ି ଚାଲିଛି । ପରିଶ୍ରମ ହିଁ ଉନ୍ନତିର କାରଣ, ସେ କଥା ମୁଁ ବୁଝିଛି । ଅତି ବେଗରେ ଆକାଶରେ ମୁଁ ଉଡ଼ିବାକୁ ଚାହେଁ । ତେଣୁ ପରିଶ୍ରମ ମୁଁ କରି ଚାଲିବି ।" ମୁଁ ମଉନ ରହିଲି ପକ୍ଷୀ ଶାବକର କଥା ଶୁଣି । ମୋର ମନେ ହେଲା ପକ୍ଷୀ ଶାବକଟି ଠିକ୍ କହୁଛି । ଆମକୁ ଆଗକୁ ଯିବାକୁ ପଡ଼ିବ, ପଛକୁ ନୁହେଁ ।

×:୦:×

# ଅସୁନ୍ଦର

ଶଙ୍ଖ ଚିଲଟି ଉଡ଼ି ଉଡ଼ି ଆସି ବର ଗଛର ଡାଳରେ ବସି ତାର କାହାଣୀ କହିବାକୁ ଲାଗିଲା । ମୁଁ ସେ ଦିନ ଉଡ଼ି ଉଡ଼ି ଯାଇ ବସିଲି ଇଞ୍ଜିନିୟରିଂ ସ୍କୁଲ ନିକଟସ୍ଥ ବର ଗଛ ଉପରେ । ଦେଖିଲି ଏହି ଗଛଟିର ତଳେ ଗୋଟାଏ ସିମେଣ୍ଟର ଚେୟାର ତିଆରି ହୋଇଛି । ସେଇଠି ବସିଛନ୍ତି ଦୁଇ ବନ୍ଧୁ । ଅଳ୍ପ ଦୂରରେ ମୋଚିଟି ବସି ଜୋତା ସିଲେଇ କରିବାରେ ଲାଗିଛନ୍ତି । ଅନେକ ଗୁଡ଼ାଏ ପାନ ଦୋକାନ । ସିମେଣ୍ଟ ଚେୟାରର ଅଳ୍ପ ଦୂରରେ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ।

ଦୁହିଁଙ୍କର ବୟସ ସତୁରି ବର୍ଷ ହେବ । ଜଣେ ଅନ୍ୟ ଜଣଙ୍କୁ ଗୋଟିଏ କାହାଣୀ କହିବାକୁ ଯାଇ କହନ୍ତି ଆଜକୁ ବହୁ ଅନେକ ଦିନ ତଳେ ଏଇ ଓଡ଼ିଶାର କୌଣସି ଗୋଟିଏ ସ୍ଥାନରେ ଜଣେ ରାଜକୁମାର ଥାନ୍ତି । ସେ ଅତ୍ୟନ୍ତ ସୁନ୍ଦର ଥାନ୍ତି । ଯେତେବେଳେ ତାଙ୍କୁ ବାର ବର୍ଷ ତାଙ୍କର ଖ୍ୟାତି ଚାରିଆଡ଼େ ପ୍ରଚାର ହୋଇ ଥାଏ । ତାଙ୍କର କାମଦେବ ଭଳି ରୂପ, ମଧୁର କଥା, ଧୀର ଆଉ ଢଙ୍ଗ ରଚନାରେ ଅନୁପମ କଳା ସମସ୍ତଙ୍କୁ ମୁଗ୍ଧ କରି ଦେଉଥାଏ । ଏତେ କମ୍ ବୟସରୁ ଅନେକ ରାଜ୍ୟର ରାଜାମାନେ ନିଜ ନିଜ କନ୍ୟା ମାନଙ୍କ ସକାଶେ ଏଇ ରାଜକୁମାରଙ୍କୁ ଭାବି ଜାମାତାରୂପେ ବରଣ କରିଥାନ୍ତି ।

କିନ୍ତୁ ଏପରି ଏକ ରାଜକୁମାରଙ୍କର ଭାଗ୍ୟରେ ଆସେ ଏକ ଦୁର୍ଦ୍ଦିନ । ହଠାତ୍ ସେ ବସନ୍ତରେ ଆକ୍ରାନ୍ତ ହୁଅନ୍ତି । ଶରୀର ଦୁର୍ବଳ ହୋଇଯାଏ । ଦୁଇ ଆଖିରେ ବସନ୍ତ ହୁଏ । ରାଜା ରାଣୀ ଅନେକ କାନ୍ଦନ୍ତି । ଅନେକ ଗୁଣିଆ ଆସନ୍ତି । ଝଡ଼ା ଫୁଙ୍କା ହୁଏ । ଦେବ ମନ୍ଦିରରେ ପୂଜା ପାଠ ହୁଏ । ରାଜ ବୈଦ୍ୟ ଔଷଧ ଦିଅନ୍ତି । ବସନ୍ତ ରୋଗ ଉପଶମ ହୁଏ ସତ, କିନ୍ତୁ ରାଜ କୁମାରଙ୍କ ଦୁଇଟି ଆଖି ନଷ୍ଟ ହୋଇଯାଏ । ସେ ଦୁଃଖରେ ଭାଙ୍ଗି ପଡ଼ନ୍ତି । ବାଧ୍ୟ ହୋଇ ଡାକ୍ତରଙ୍କ ପରାମର୍ଶ କ୍ରମେ ସେହି ଆଖିଟି କାଢି ଦିଆଯାଏ ।

ସମସ୍ତଙ୍କଠାରୁ ସେ ଦୂରରେ ରହିବାକୁ ଚେଷ୍ଟା କରନ୍ତି । ତାଙ୍କରି ସମସ୍ତ ସମୟ ସେ କଟାନ୍ତି ସାହିତ୍ୟ ଶ୍ରବଣରେ । ଅନେକ କବିଙ୍କ ରଚନା ଶୁଣି ସେ ହୁଅନ୍ତି ଏକ ବିରାଟ ପଣ୍ଡିତ । ରୋଗର ଦାରୁଣ ଆଘାତରେ ଯେଉଁ ମନ ଦିନେ ମରି ଯାଇଥିଲା ତାହା

କାଳିଦାସଙ୍କ ମେଘଦୂତ, ଶକୁନ୍ତଳା, ଉପେନ୍ଦ୍ର ଭଞ୍ଜଙ୍କ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ ପଠନରେ ପ୍ରୀତି ଜାଗ୍ରତ ହୋଇ ଉଠେ । ଲାବଣ୍ୟବତୀର ନାୟକର ରୂପ, ଗରିମା ପଠନ କରି ସେ ବି ନିଜକୁ ଏକ ଧୁରନ୍ଧର ରାଜପୁତ୍ର ମନେ କରନ୍ତି । ପ୍ରେମର ଅସୁମାରି ଧାରା ପ୍ଲାବିତ ହୁଏ ତାଙ୍କର ହୃଦୟରେ । ସେ ଅନେକ କାବ୍ୟ କବିତା ରଚନା କରନ୍ତି ।

ଦିନେ ରାଜକୁମାରଙ୍କ ସାକ୍ଷାତ ହୁଏ ଏକ ରାଜକୁମାରୀଙ୍କ ସହ । ନର୍ଲଚଞ୍ଚଳା ରାଜକୁମାରୀ କୁମାରଙ୍କ କାବ୍ୟ କବିତା ପଠନ କରନ୍ତି । ସେ କହନ୍ତି "ଆପଣଙ୍କ କବିତାର ମଧୁ ମୋର ହୃଦୟକୁ ଆନନ୍ଦ ପ୍ରଦାନ କରୁଛି । ଆପଣଙ୍କ କବିତାର ସଙ୍ଗୀତ ମୋର କର୍ଣ୍ଣ ପଥରେ ଅମୃତ ଢାଳି ଦେଉଛି ।

ରାଜକୁମାରଙ୍କ ବୟସ ବଢିବାକୁ ଲାଗିଥାଏ । ଯୌବନର ପଦାର୍ପଣରେ ତାଙ୍କ ମନରେ ଅସଂଖ୍ୟ ସୁନେଲି ସ୍ୱପ୍ନ ଖେଳି ଯାଉଥାଏ । ବସନ୍ତର ଆଗମନରେ ଯେପରି ବଗିଚାରେ ଅନେକ ଫୁଲ ଫୁଟି ଉଠେ ସେହିପରି ରାଜକୁମାରଙ୍କ ହୃଦୟ ଯୌବନର ପଦାର୍ପଣରେ ପରମିତ ହୋଇ ଉଠେ । ରାଜକୁମାରୀଙ୍କ କଥା ଶ୍ରବଣ କରି ସେ ପାଆନ୍ତି ଅପାର ଆନନ୍ଦ । ସେ ମନେ ମନେ ଭାବନ୍ତି ଯଦି ରାଜକୁମାରୀଙ୍କୁ ସେ ଜୀବନସାଥୀ ରୂପେ ପାଇ ପାରନ୍ତେ ତାହା ହେଲେ ତାଙ୍କର ସାହିତ୍ୟିକ ସାଧନାରେ ସେ ଫଳପ୍ରଦ ହେବେ ।

ହୃଦୟରେ ପ୍ରେମ ଭାବର ସଞ୍ଚାର ହୁଏ । ତାହା କବିତା ଆକାରରେ ପ୍ରକାଶ ପାଏ କବିଙ୍କ ଲେଖନୀରେ । ସେହି କବିତା ଯିଏ

ଘଠନ କରେ ତାର ହୃଦୟ ପ୍ରେମର ମିଳନର ଭାବନାରେ ଉଦ୍ବୁଦ୍ଧ ହୋଇ ଉଠେ । କବିଙ୍କ ଯଶ ଓ ଖ୍ୟାତି ଚାରିଆଡ଼େ ବ୍ୟାପିଯାଏ ।

କିନ୍ତୁ ଦିନେ ଏକ ଦୁଃଖଦ ଘଟଣା ଘଟେ । ରାଜକୁମାର ଦିନେ ନିଜର ମନୋଭାବ ପ୍ରକାଶ କରନ୍ତି ରାଜକୁମାରୀଙ୍କ ନିକଟରେ । ନିଜର ପ୍ରେମ ନିବେଦନ କରନ୍ତି । କିନ୍ତୁ ତାଙ୍କର ଏହି କଥା ଶୁଣି ରାଜକୁମାରୀ ହସି ଉଠନ୍ତି । ସେ କହନ୍ତି "ରାଜକୁମାର ! ତମେ ଭାରି ଅସୁନ୍ଦର । ତୁମର ମୁହଁକୁ ଦେଖିଲେ ମୋର ମନରେ ଜାଗ୍ରତ ହେଉଥିବା ପ୍ରେମ ଭାବନା ଆପେ ଆପେ ନଷ୍ଟ ହୋଇ ଯାଉଛି ।"

ରାଜକୁମାରୀଙ୍କ ଉତ୍ତର ଅତ୍ୟନ୍ତ ବ୍ୟଥା ଦିଏ ରାଜକୁମାରଙ୍କ ମନରେ । ସେ ଭାବନ୍ତି ଏ ସଂସାର କେବଳ ବାହ୍ୟ ସୌନ୍ଦର୍ଯ୍ୟ ପ୍ରତି ଆଗ୍ରହୀ । ହୃଦୟର କୋମଳ ଭାବନା, ମଣିଷର ଗୁଣ ଏବଂ ମଣିଷ ପଣିଆ ଏ ସଂସାରରେ କୌଣସି କାମରେ ଆସେନି । ସେ ନିଷ୍ପତ୍ତି କରନ୍ତି ଏହି ମାନବ ସମାଜଠାରୁ ଦୂରରେ ରହି ଜୀବନ କଟାଇବେ ।

ସେ ଆଜି ବି ବଞ୍ଚି ରହିଛନ୍ତି । ବିବାହ ନ କରିବାର ନିଷ୍ପତ୍ତି ନେଇ ସମସ୍ତ ଜୀବନ ସଙ୍ଗୀତ ସାଧନାରେ କଟାଇ ଦେଇଛନ୍ତି ।

କଥାଟି ଶୁଣି ସମସ୍ତ ପକ୍ଷୀଙ୍କ ନେତ୍ରରୁ ଲୁହ ବହିବାରେ ଲାଗିଥାଏ । ସମସ୍ତେ କହନ୍ତି ରାଜକୁମାରୀ ନିଷ୍ଠୁର କର୍ମ କରିଛନ୍ତି ।



# ବିଦେଶ ଯାତ୍ରା

ତାଳ ମଜାଳିଆ କାହାଣୀ କହିବାକୁ ଯାଇ ଭ୍ରମରଟି କହିଲା ବରଳାର ଅପର ପାର୍ଶ୍ୱରେ ମନ୍ଦରଟିଏ । ମୁଁ କଥା ଫୁଲର ସୁଗନ୍ଧରେ ବିମୋହିତ ହୋଇ ଆଗକୁ ଉଡ଼ି ଗଲି । ଯାଇ ପହଞ୍ଚିଲି ବରଳାର ଅପର ପାର୍ଶ୍ୱରେ । ସେଠାରେ ଅନେକ ଫୁଲ ଗଛ ଆଉ ଗୋଟିଏ ମନ୍ଦର । ସମସ୍ତେ ଏହାଙ୍କୁ ଠାକୁରାଣୀ ମନ୍ଦର ବୋଲି ଡାକନ୍ତି । ମନ୍ଦରକୁ ଲାଗି ବରଳା ବନ୍ଧର ବିରାଟ ହୁଡ଼ା । ମୁଁ ଅନ୍ୟମନସ୍କ ହୋଇ ହୁଡା ଉପରେ ଉଡି ବୁଲିଲି । ମୋତେ କିଏ ପୋଖରୀ ଭିତରୁ ଡାକିବାର ଶୁଣାଗଲା । ମୁଁ ହୁଡା ଉପରେ ବସି ପଡ଼ି ପାଣି ପାଖକୁ କାନେଇଲି । ଦେଖିଲି ଗୋଟାଏ ଛୋଟ ଷୋହଳ ମାଛ କହୁଛି "ଭ୍ରମର ଭାଇ ! ଏଠାରୁ ପାଟ କେତେ ଦୂର । ତାହା ଗୋଟାଏ ଛୋଟ ହ୍ରଦ ଭଳି ହେବ କି ? ମୋର ମାଆ କୁହେ ସେଠାରେ ଅନେକ ବଡ଼ ବଡ଼ ମାଛ ଅଛନ୍ତି । ଏଠାରୁ ସେଇ ପାଟଟି କେତେ ଦୂର ? ମୁଁ ହସି ହସି କହିଲି ନାଳରେ ନାଳରେ ଗଲେ ତିନି କୋଶ ବାଟ ହେବ ।

୨

ଏହି ପୋଖରୀରୁ ତ ତଳକୁ ଆସିବୁ, ସେଠାରୁ ତୁ ଭାସି ଭାସି ଯିବୁ ବାହୁଆ ବରଗଛ ପୂଠାର ପର୍ଯ୍ୟନ୍ତ । ତା ପରେ ପଡିବ ଗୁଣ୍ଡିଆ ନାଳ । ତାପରେ ନଙ୍ଗଳା ନାଳ । ଏହି ନାଳରେ ନାଳରେ ଯାଇ ତୁ ମିଶିବୁ ଅନ୍ୟ ନାଳ ସହିତ । ଆଉ ବହିଯିବୁ ତଳକୁ ତଳକୁ । ଗଞ୍ଜୁଗାର ନିକଟରେ ଥିବା ଏହି ପାଟରେ ମିଶିବୁ ।

ତେବେ କଣ ମୁଁ ବର୍ତ୍ତମାନ ନଳକୁ ଡେଇଁ ପଡ଼ିବି । "ହେମି ଜଟିଳ ଭ୍ରମର । "ଏହା କପରି ସମ୍ଭବ ଷୋଉଳ୍ ? ଯେତେବେଳେ ବେଶୀ ଜୋରରେ ବର୍ଷା ହେବ ଆଉ ବରଜାରେ ଜୁଆଁ ଉପରେ ପାଣି ଡେଇଁବ ସେତେବେଳେ ଯାଇ ପାଠ ହସ୍ତ ବରଜାର ଜଳର ମିଶ୍ରଣ ହେବ । ସେଣ୍ଟ ଜଳରେ ଭାସି ଭାସି ତୁ ଯଇ ପାଠରେ ପହଞ୍ଚିବୁ । "କପରି ସେ ପାଠ ?" ଜଣେ ସେଠାରେ ହାସ ଚନ୍ତ ଚନ୍ତ ତାର ଜଳରେ ଭାସୁଛନ୍ତି ? ଦୂରରୁ ସମୁଦ୍ରର ବ୍ରୁ ବ୍ରୁ ଗମ୍ଭୀର ଗର୍ଜନ ଆସି କାନରେ ବାଜୁଛି ? ଏହାର ପ୍ରାକୃତିକ ଦୃଶ୍ୟ କଣ ଅତି ସୁନ୍ଦର ? ସବୁତ ସୁନ୍ଦର ଷୋଉଳ । କିନ୍ତୁ ଗୋଟିଏ କଥା ଅଦ୍ଭୁତ ।

ଏହି ବରଜା ପୋଖରୀର ଜଳ ଏ ସ୍ଥଳ ମର୍ତ୍ତାଙ୍କର ସବୁ ଦିନେ ଜମା କରି ରଖା ଯାଉଛି । ଗ୍ରୀଷ୍ମ ଋତୁରେ ଏହି ଜଳ ପିବାକୁ ଛାଡ଼ି ଦିଆ ଯାଉନ । ତେଣୁ ଏଣ୍ଠାରେ ମାଛ ଧରା ଯଉନ । ଏହି ପୋଖରୀରେ ରହୁଥିବା ପ୍ରତ୍ୟେକ ମାଛର ଜୀବନ ବିପଦ ଶୂନ୍ୟ । କିନ୍ତୁ ପ୍ରତି ଦିନ ପାଠରେ କେତେ ଜାଲ ପଡ଼ୁଛି, କେତେ ବେନ୍ଧା ପକାଉଛନ୍ତି, କେତେ ପୋଳ ବୁଲୁଛି ତାହା କଳ୍ପନା ଭୂମେ କରି ପାରିବ ନାହିଁ । ଅନେକ ନାବ ଘୂରି ବକ୍ଷରେ ଘୂରି ବୁଲୁଛି । ଏଥିରେ ମାଛ ମାରିବା ଲୋକମାନେ ଜାଲ ଧରି ବୁଲୁଛନ୍ତି ।

ଷୋଉଳ ଜୁନ୍ ତାନ ନେଲା । ଗ୍ରୀଷ୍ମ ଋତୁ ଯାଇ ବର୍ଷା ଋତୁ ଆସିଲା । ଆକାଶ ମେଘାଚ୍ଛନ୍ନ ହେଲା । ଥଣ୍ଡା ପବନ ବହିବାକୁ ଲାଗିଲା । ବର୍ଷା ଜଳରେ ବିଲ ବାଡ଼ି ଭର୍ତ୍ତି ହେଲା । ବରଜାରେ ପାଣି ଭର୍ତ୍ତି ହେବାକୁ ଲାଗିଲା । ଜୁଆଁ-ର ପାଣି ନେଇଲା । ଷୋଉଳ ମନ ଛଟପଟ ହେଲା ନଳକୁ ଡେଇଁ ପଡ଼ି ନାଳରେ ଭାସି ଭାସି ଯିବାକୁ ।

ଆକାଶରେ ମେଘ । ଶୀତଳ ପବନ । ତା ମନ ଛନ ଛନ ହୁଏ । ଶେଷରେ ସେ ଡେଇଁ ପଡେ ନାଳକୁ । ଭସି ଭସି ଯାଏ ନଙ୍ଗଳା ନାଳକୁ । ତା ପରେ ସେ ଯାଏ ଘାଟକୁ ।

ସେ ଉପରକୁ ମୁଣ୍ଡ ଟେକି ଅନାଏ । କେଡେ ବଡ ଏ ଘାଟ । ଚାରିଆଡେ ଜଳ ହିଁ ଜଳ । ଅଦୂରରେ ଘାଟର ଶେଷ । ଅନେକ ନାଆ ଭାସୁଛି ଏହି ଘାଟର ବକ୍ଷରେ । ଅନେକ ଜାଲ ପଡୁଛି ଏହି ବିରାଟ ଘାଟରେ, ଅନେକ ମାଛ ଜାଲରେ ପଡ଼ି ଛଟପଟ ହେଉଛନ୍ତି । ଏହା ଦେଖି ସେ ଡରିଗଲା । ଏଠାରେ ତ ପ୍ରତ୍ୟେକ ମୁହୂର୍ତ୍ତରେ ପ୍ରାଣ ଯିବାର ଆଶଙ୍କା ।

ସେ ଘଣ୍ଟାଯାକ ବୁଲିଲା ଏହାର ବକ୍ଷରେ । ଜଣେ ବନ୍ଧୁ ଷୋଉଳ ଆଗେଇ ଆସି କହିଲେ "ହେ ନୂତନ ବନ୍ଧୁ ! ତୁମେ ଯଦି ଭୂମି ତଳେ ମୁଣ୍ଡ ପୋତି ନ ରୁହ ତାହାହେଲେ ତୁମର ମୃତ୍ୟୁ ସୁନିଶ୍ଚିତ । ଷୋଉଳର ମୁଣ୍ଡ ଖରାପ ।

ଏହା ଭିତରେ ଗୁରୁ ଦିନ ବିତି ଯାଇଛି । ବଢି ସୁଅ ଆସି ମିଶୁଛି ଏହି ଘାଟରେ । ସେ ମନ କଲା ଫେରି ଯିବାକୁ ବରଳାକୁ । ପାଣିର ବିପରୀତ ସ୍ରୋତରେ ସନ୍ତାରି ସେ ପହଞ୍ଚିଲା ବରଳାରେ । ତାଙ୍କୁ ଏହି ଛୋଟ ପୋଖରୀଟି ହିଁ ଆନନ୍ଦ ଦେଲା ।



# କବି ପରିଚୟ

କବିଙ୍କର ଜନ୍ମ ବ୍ରହ୍ମପୁର ନିକଟସ୍ଥ ଡୁରା ଗ୍ରାମରେ । ୧୯୪୩ ମସିହା ମେ ମାସରେ ଡୁରାର ଏକ ଗରିବ ପରିବାରରେ କବି ଜନ୍ମ ଗ୍ରହଣ କରନ୍ତି । ପିତାଙ୍କ ନାମ ରାଧାଶ୍ୟାମ ସାହୁ । ମାତାଙ୍କ ନାମ କୌଶଲ୍ୟା ସାହୁ । ଦୁଇ ଭାଇଙ୍କ ନାମ ହରିହର ସାହୁ ଓ ନାରାୟଣ ସାହୁ । ଡୁରାର ଚତୁଃପାର୍ଶ୍ୱରେ ଅନେକ ବୃକ୍ଷଲତା, ପୁଷ୍କରିଣୀ, ଶସ୍ୟ କ୍ଷେତ୍ର କବିଙ୍କ ମନରେ ପ୍ରକୃତି ପ୍ରତି ଆଗ୍ରହ ସୃଷ୍ଟି କରେ ।

୧୯୬୨ ରେ ରାଜା ଗୋପୀନାଥ ଚୌଧୁରୀଙ୍କ ଉଦ୍ୟମରେ ଖଣ୍ଡେ ନୌକରୀ ମିଳେ ଭଞ୍ଜନଗରରେ । ଏହି ପ୍ରକୃତିର ପୀଠ ସ୍ଥଳୀ ଭଞ୍ଜନଗର କବିଙ୍କ ମନରେ ସୃଷ୍ଟି କରେ କବିତା ରଚନା କରିବାର ପ୍ରେରଣା । ସେ ସେଠାରେ ଲେଖନ୍ତି 'ଅଶ୍ରୁ' । ତାର ପରେ ପରେ ଉତ୍ତରା ନାମକ ଖଣ୍ଡ କାବ୍ୟ ରଚନା କରିଯାଏ ଏବଂ ଏହି ଦୁଇଟି କାବ୍ୟ ପ୍ରକାଶିତ ହୁଏ ୧୯୭୦ ମସିହାରେ । ପୁଣି ଦୀର୍ଘ ଦିନର ନୀରବତା ପରେ କବିଙ୍କର ତିନୋଟି ରଚନା ପ୍ରକାଶ ପାଏ ।

ନିଜର ପ୍ରିୟ ବନ୍ଧୁ ଅନିଲ ତ୍ରିପାଠୀଙ୍କ ବ୍ୟକ୍ତିତ୍ୱର ପ୍ରଭାବ କବିଙ୍କ ଉପରେ ପଡ଼େ । ସେ ଜଣେ ନିଷ୍ଠାପର ତଥା ଶୃଙ୍ଖଳିତ ବ୍ୟକ୍ତି । କବି ତାଙ୍କୁ ବେଶି ଆଦର ଏବଂ ସମ୍ମାନ ଦେଇଥାନ୍ତି ।



## ⁂ କବିଙ୍କ ଅନ୍ୟାନ୍ୟ ରଚନା ⁂

* ଅଶ୍ରୁ (କବିତା ସଂକଳନ)

* ଉତ୍ତରା (ଖଣ୍ଡ କାବ୍ୟ)

⁂ କବିତା ସାଗର

* ବେଦବ୍ୟାସ (ଉପନ୍ୟାସ)

ଉପହାର (କବିତା ସଂକଳନ)

⁂ ଜୀବ ଜଗତର କାହାଣୀ

---